# ସମ୍ପର୍କ

ମୁଖ୍ୟ ଉପଦେଷ୍ଟା :
ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର

ପ୍ରକାଶକ :
ଶ୍ରୀ ନୃସିଂହପ୍ରସାଦ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ - ୭୫୩ ୦୦୨

ପ୍ରଥମ ସଂସ୍କରଣ : ୧୯୯୪
ଦ୍ୱିତୀୟ ସଂସ୍କରଣ : ୧୯୯୮
ତୃତୀୟ ସଂସ୍କରଣ : ୨୦୦୭

ମୁଦ୍ରାକର :
ଶତରୂପା ଡି.ଟି.ପି. ଓ ସଙ୍ଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ : ଟ. ୪୦.୦୦ ମାତ୍ର

**SAMPARKA**

By Saroj Mishra

Publisher :
Sri N. P. Misra
Cuttack Students' Store
Balubazar, Cuttack – 753002

Principal Adviser :
Sri R. P. Misra

First Edition : 1994
Second Edition : 1998
Third Edition : 2007

Printers :
Satarupa D.T.P. & Sangeeta Printers, Cuttack

Price : Rs. 40.00 only

ଯାହାଙ୍କ ସାହିତ୍ୟ ସାଧନା, ଅନ୍ୱେଷା, ନିଷ୍ଠା, ଅଧ୍ୟବସାୟ ଓ ଗବେଷଣା ମତେ କେବଳ କାହିଁକି ପ୍ରତି ସ୍ୱାଭିମାନୀ ଓଡ଼ିଆଙ୍କୁ ପ୍ରଲୁବ୍ଧ କରିଛି; କବି ଜୟଦେବଙ୍କୁ ଓଡ଼ିଆ ମାଟିର ସନ୍ତାନ ବୋଲି ସାବ୍ୟସ୍ତ କରିବାରେ ଯାହାଙ୍କ ଉଦ୍ୟମ ପ୍ରଶଂସାଯୋଗ୍ୟ ଓ ଅବିସ୍ମରଣୀୟ ସ୍ନେହି ଗବେଷକ, ପ୍ରାବନ୍ଧିକ ଓ କଥାକାର ସତୀର୍ଥ ଶ୍ରୀ ଅଜିତ କୁମାର ତ୍ରିପାଠୀଙ୍କ କରକମଳରେ ମୋର ଏଇ ବହୁଚର୍ଚ୍ଚିତ ତୃତୀୟ ସଂସ୍କରଣର ନାଟକ 'ସମ୍ପର୍କ'କୁ ଅର୍ପଣ କରୁଛି ।

– ସରୋଜ ମିଶ୍ର

## ତୃତୀୟ ସଂସ୍କରଣ ପାଇଁ ପଦେ

ଅନେକଦିନରୁ ସାହିତ୍ୟସହ ମୋ' ଜୀବନ ସମ୍ପର୍କ ରକ୍ଷି ଆସୁଛି । ସାହିତ୍ୟ କାଳର କୌଣସି ସୀମିତି ବନ୍ଧନକୁ ମାନେ ନାହିଁ - କାଳ ଓ ମହାକାଳ ସହ ସମତାଳରେ ସାହିତ୍ୟ ପରିବ୍ୟାପ୍ତ, ତା'ର ଅନ୍ତ ନାହିଁ, ଦିଗ ନାହିଁ, ସେ ଅନନ୍ତ, ସେ ସତ୍ୟ, ସେ ସୃଷ୍ଟି, ସେ ସଂସ୍ଥାପକ ଜୀବନ ଗତିର । ଜୀବନର ଏକ ପ୍ରତିବିମ୍ବ ବା ନକଲ ତ ସାହିତ୍ୟ - ଜୀବନର ଅନୁକରଣ ହେଉଛି ସାହିତ୍ୟ - ସାହିତ୍ୟର ଅଭିବ୍ୟକ୍ତି ଜୀବନର ପ୍ରତିରୂପ - ସାହିତ୍ୟିକର ମାନସପଟ୍ଟର ଅନୁଚିନ୍ତନର ଆଲେଖ୍ୟ ମଧ୍ୟ । ଜୀବନର ନିକଟ ବଳୟକୁ ଯେତେ ଅନ୍ତରଙ୍ଗ ଭାବରେ ସ୍ରଷ୍ଟାଟିଏ ଅନୁଧ୍ୟାନ କରେ, ତା'ର ଲେଖନୀ ସେତିକି ପରିପୁଷ୍ଟ ହୁଏ- ବ୍ୟକ୍ତିତ୍ୱର ପ୍ରଭାବ, ବ୍ୟକ୍ତିଗତ ଅନୁଭୂତିର ସ୍ପନ୍ଦନ, ବ୍ୟକ୍ତିସତ୍ତାର ଉପଲବ୍ଧି ସାହିତ୍ୟ ସର୍ଜନା କ୍ଷେତ୍ରରେ ନିଶ୍ଚିତ ଭାବରେ ଅନୁଭବ୍ୟ । ଗତାନୁଗତିକ ଜୀବନରେ ଏମିତି ଏକ ଅନୁଭବକୁ ରଚନାରେ ଫୁଟାଇବାକୁ ଯାଇ 'ସମ୍ପର୍କ' ନାଟକର ସୃଷ୍ଟି ।

ନାଟକର ନାୟକ ପ୍ରଶାନ୍ତ ଏବଂ ନାୟିକା ସୀମା ସଦ୍ୟ ବିବାହିତା ଦମ୍ପତ୍ତି ସଂସାରୀ ଜୀବନଯାପନ କରନ୍ତି । ପ୍ରଶାନ୍ତ ଟିକିଏ ଭିନ୍ନ ରୁଚିର ମଣିଷ । ସିଏ ଚାହେଁ ଅଧ୍ୟୟନ ଓ ବୌଦ୍ଧିକତା ମଧ୍ୟରେ ଲିପ୍ତ ରହିବାକୁ, ଯଦିଓ ସୀମା ସବୁ ସ୍ତ୍ରୀଙ୍କ ପରି ବିଳାସବ୍ୟସନ, ଫୁର୍ତ୍ତି ଆଦିରେ ଜୀବନ କାଟିବାରେ ଆଗ୍ରହୀ । ସବୁ ଝିଅଙ୍କ ପରି ବାପା-ମାଆ ଓ ସେମାନଙ୍କ ସଂପର୍କରେ ଅଧିକ ବାନ୍ଧିହେବାକୁ ସେ ଚାହେଁ । ତଦନୁଯାୟୀ ପ୍ରଶାନ୍ତକୁ ସେ ପ୍ରଭାବାନ୍ୱିତ କରିବାକୁ ଉଦ୍ୟମ କରିଛି; ଯେତେବେଳେ କି ପ୍ରଶାନ୍ତର ବାପା ମନମୋହନ ଖୁବ୍ ଅସୁସ୍ଥ; ଯେତେବେଳେ ସୀମା ନିଜର ସମ୍ପର୍କୀୟ ଭାଇର ବିବାହ ଭୋଜିରେ ଯୋଗଦେବାକୁ ଜିଦ୍ ଧରିଛି । କିନ୍ତୁ ପ୍ରଶାନ୍ତଙ୍କ ଚାରିତ୍ରିକ ଦୃଢ଼ତା ହେତୁ ସେ ନିଜେ ଯାଇ ଗାଁରୁ ବାପାକୁ ଧରି ଭୁବନେଶ୍ୱର ଫେରି ଆସିଛନ୍ତି । ଶଶୁରଙ୍କ ସେବାଶୁଶ୍ରୂଷାର ଭାର ସୀମା ଉପରେ ପଡ଼ିଛି । ବାପା ରହିବା ଯୋଗୁ ଖୁଟ୍‌ଖାଟ୍ ବି ଆରମ୍ଭ ହୋଇଛି । ସୀମାର ସାନ ଭଉଣୀ ଓ ତା' ବର ଆସିବେ ବୋଲି ଚିଠି ପହଞ୍ଚିଛି । ତେଣୁ ସୀମା ଶଶୁରଙ୍କୁ ଗାଁକୁ ପଠାଇବା ଲାଗି ଜିଗର କରିଛି, କିନ୍ତୁ ତାହା ଫଳବତୀ ହୋଇପାରି ନାହିଁ । ଥରେ ବାପାଙ୍କର ହାତ ବାଜି ସୀମାର ଭାରି ପ୍ରିୟ ଗୋଟିଏ ମୂର୍ତ୍ତି ଭାଙ୍ଗିଯାଇଛି । ସୀମା ଜାଣିଲେ ରାଗିବ ବୋଲି ଭାବି ଘରର ଚାକର ମାଗୁ ତାକୁ ଲୁଚେଇ ନେଇ ଫିଙ୍ଗିଦେବାକୁ

ଗଲାବେଳେ ସୀମା ମାଗୁର କନକନିଆ ସ୍ୱଭାବକୁ ଦେଖି ପକାଇଛି । ସେ ଭାବୁଛି ମାଗୁ କିଛି ଜିନିଷ ଚୋରିକରି ନେଇ ଚାଲିଯାଉଛି । ମାଗୁ ମଧ୍ୟ ପଚାରିଲେ ବି ମୂର୍ତ୍ତିଭଙ୍ଗା କଥା କହୁ ନାହିଁ । ସୀମା ତାକୁ ଚାପୁଡ଼େ ମାରିଛି ଓ ଘରୁ ଚାଲିଯିବାକୁ କହିଛି । ମାଗୁ ଘରର ପୁରୁଣା ବିଶ୍ୱାସୀ ଚାକର । ଏଭଳି କଥାଶୁଣି ଓ ମାଡ଼ଖାଇ ସେ ଭାରି ମନଦୁଃଖ କରିଛି । ପ୍ରଶାନ୍ତ ଆସି ପହଞ୍ଚିଛି ଓ ମାଗୁଠାରୁ ବାପାଙ୍କ ମୂର୍ତ୍ତିଭଙ୍ଗା କଥା ଶୁଣି ମାଗୁ ଉପରେ ସୀମାର ହାତ ଉଠାଇବାକୁ ପସନ୍ଦ କରି ନାହିଁ । ସ୍ୱାମୀ–ସ୍ତ୍ରୀ ମଧ୍ୟରେ ଝଗଡ଼ାବାଚ ହୋଇଛି । ବାପା ଇତିମଧ୍ୟରେ ଭଲ ହୋଇଯାଇଛନ୍ତି । ସେ ଅନ୍ତରାଳରେ ରହି ସବୁ ଦେଖିଛନ୍ତି ଓ ଦୁଃଖିତ ହୋଇ କାହାରିକି କିଛି ନକହି ଚିଠିଟିଏ ଲେଖିଦେଇ ପରଦିନ ଗାଁକୁ ଚାଲିଯାଇଛନ୍ତି । ଚିଠିପଢ଼ି ସୀମାର କିଛିଟା ଅନୁତାପ ଆସିଛି । ଏହି ସମୟରେ ସମ୍ବାଦ ଆସି ପହଞ୍ଚିଛି ଯେ ସୀମାର ମାଆଙ୍କର ଦେହ ଭାରି ଖରାପ । ସୀମା ତାଙ୍କ ପାଖକୁ ଯିବାକୁ ବାହାରିଛି; କିନ୍ତୁ ପ୍ରଶାନ୍ତ କହୁଛି ତା'ର ରିସର୍ଚ୍ଚ କାମ ବାକି ଅଛି – ତେଣୁ ସେ ଯାଇପାରିବ ନାହିଁ । ଏଠି ପ୍ରଶାନ୍ତ ଦୃଢ଼ଭାବରେ ସୀମାକୁ ପ୍ରତିରୋଧ କରିଛି – "ଶଶୁରଙ୍କ ଦେହ ଖରାପ ଶୁଣି ବୋହୂରାଣୀ ସିନା ଗାଁକୁ ଯାଇପାରିଲେ ନାହିଁ, ହେଲେ ବୋହୂର ଦେହ ଖରାପ ଶୁଣି ଶଶୁର ଅଣନିଃଶ୍ୱାସୀ ହୋଇ ଧାଇଁ ଆସି ଦେଖନ୍ତି ତ ବୋହୂ ବନ୍ଧୁଙ୍କ ସହ କାର୍‌ରେ ନନ୍ଦନକାନନ ଯାଇଛନ୍ତି ।" ହେଲେ ଏସବୁ ସତ୍ତ୍ୱେ ପ୍ରଶାନ୍ତ ଉଚ୍ଚ ସ୍ୱଭାବର । ତା'ର ମାନବିକତା ରହିଛି ସେ ଏକ ଟ୍ୟାକ୍‌ସି ନେଇ ଅଫିସରୁ ଫେରିଛନ୍ତି ଶାଶୂଙ୍କୁ ଦେଖିଯିବାକୁ । ପ୍ରଶାନ୍ତର ସଂଳାପ "ସେଦିନ ତୁମେ ଯେମିତି ମତେ ଏକା ପଠେଇ ଦେଲ ମୁଁ କ'ଣ ତୁମକୁ ଏକା ପଠେଇ ପାରିବି ? କ୍ୱାଇଁଭାବରେ ଶାଶୂଙ୍କ ପ୍ରତି କ'ଣ କର୍ତ୍ତବ୍ୟ, ତାହା ମୁଁ ଭଲ ଭାବରେ ଜାଣେ ।" ଶେଷରେ ଦାମ୍ପତ୍ୟ ସଂପର୍କର ଦ୍ୱନ୍ଦ୍ୱ ଶେଷ ହୋଇଛି ଓ ନାଟକର ମଧ୍ୟ ।

ଆମେ ଅଧୁନା ମାୟା ଚାକଚକ୍ୟ ସ୍ୱାର୍ଥପରତା ଭିତରେ ଅନ୍ଧହୋଇ ଆମ ଚିରନ୍ତନ ସଂପର୍କିତମାନଙ୍କ ପ୍ରତି କର୍ତ୍ତବ୍ୟକୁ ବିସ୍ମୃତ ହୋଇଯାଉଛେ । ଆମର ଚତୁଃପାର୍ଶ୍ୱରେ ଦୃଶ୍ୟମାନ ସାଧାରଣ ଓ ପରିଚିତ ଚରିତ୍ରମାନଙ୍କୁ ନେଇ ଏଇ ନାଟକ୍ଟିର ବିଷୟବସ୍ତୁର କଳ୍ପନା କରାଯାଥିଲା । ନାଟକୀୟତା ପାଇଁ କୌଣସି ହଟଚମଟର ଆଶ୍ରୟ ନନେଇ ନାଟକର ଆରମ୍ଭରେ ପତିର ବାପା ଓ ଶେଷରେ ପତ୍ନୀର ମା'ଙ୍କର ଅସୁସ୍ଥତା ପରି ସାଧାରଣ ଘଟଣା ଓ ସେମାନଙ୍କ ପ୍ରତି ସ୍ତ୍ରୀ ଓ ସ୍ୱାମୀଙ୍କର ତୁଳନୀୟ ପ୍ରତିକ୍ରିୟାକୁ ବ୍ୟବହାର କରି ଅନେକ ସୂକ୍ଷ୍ମ ଘଟଣାର ଅବତାରଣା କରାଯାଇଛି ଏ ନାଟକଟିରେ ଏବଂ ଓଡ଼ିଶାର

ପ୍ରମୁଖ ରଙ୍ଗମଞ୍ଚରେ ବହୁବାର ଅଭିନୀତ ହୋଇ ଦର୍ଶକଙ୍କଦ୍ୱାରା ଆଦୃତି ଲାଭକରିଛି । ଏତଦ୍‌ବ୍ୟତୀତ ଦୂରଦର୍ଶନ ଓ ବେତାର ନାଟକ ଭାବରେ ଏହା ପରିବେଷିତ ହୋଇ ଜନାଦୃତି ପାଇଛି, ଏବଂ ପୁନଃ ପୁନଃ ପ୍ରସାରିତ ହେଉଛି । ଏହା ନିଂସନ୍ଦେହ ଯେ 'ସମ୍ପର୍କ' ନାଟକ ମୋ ନାଟ୍ୟକାର ଜୀବନର ଶ୍ରମ ଉତ୍ତୋରଣରେ ଏକ ସଫଳ ରଚନା । ସତ୍ୟର ଉପରୁ ଉତ୍ପାରିତ ପ୍ରତିଟି ଚରିତ୍ରର ବାସ୍ତବତା ଏ ନାଟକରେ ପ୍ରତିବିମ୍ବିତ ।

ଏହାର ତୃତୀୟ ସଂସ୍କରଣର ପ୍ରଣିତ ଅବସରରେ ପ୍ରଥିତଯଶା ପ୍ରକାଶକ ଓ ବନ୍ଧୁ ଶ୍ରୀ ନୃସିଂହପ୍ରସାଦ ମିଶ୍ରଙ୍କ ଅବଦାନ କମ୍ ନୁହେଁ । ତାଙ୍କୁ ସାଧୁବାଦ ଓ କୃତଜ୍ଞତା ଜଣାଇବାକୁ ମୋ ପାଖରେ ଭାଷା ନାହିଁ ।

– ନାଟ୍ୟକାର

## ପ୍ରଥମ ଦୃଶ୍ୟ

*(ପ୍ରଶାନ୍ତର ସରକାରୀ ଘର-ଡ୍ରଇଂ ରୁମ୍‌-ସମୟ ସଂଧ୍ୟା-ପୃଷ୍ଠମଞ୍ଚରୁ ଅନତିଦୂରରୁ ମନ୍ଦିରରେ ଘଣ୍ଟ ଧ୍ୱନିର ଶବ୍ଦ । ପରଦା ଖୋଲିବା ପରେ ଦେଖାଗଲା ମାଗୁ (ଚାକର) ସଂଜ ସଳିତା ଧରି ମଞ୍ଚକୁ ପ୍ରବେଶ କରିଛି । ମାଗୁ ବାହାରକୁ ଚାଲିଯାଇଛି । ପଛେ ପଛେ ସୀମା (ପ୍ରଶାନ୍ତର ସ୍ତ୍ରୀ) ଆସିଛନ୍ତି । ପିନ୍ଧିଥିବା ଦାମୀ ଲୁଗାର କୁଞ୍ଚକୁ ସଜାଡ଼ିବାରେ ବ୍ୟସ୍ତ । ମୁଣ୍ଡରେ ଫୁଲର ମାଳ-ହାତ ଘଣ୍ଟାକୁ ଦେଖି)*

ସୀମା    ମାଗୁ । ମାଗୁ । (ଟି.ଭି ଉପରେ ଥୁଆ ହୋଇଥିବା ବହିକୁ ର୍ୟାକ୍‌ରେ ରଖିଛି ଓ ପୁଣି ଡାକିଛି) ମାଗୁ । ମାଗୁ । କୁଆଡ଼େ ଯାଉଛି ଯେ... ମାଗୁ... (ପୁଣି ଭିତରକୁ ଯାଇଛି)

ମାଗୁ    (ବାହାର ପଟୁ) ନୀଳ ଚକ୍ରେ ହେ.... ଦେଖ, ଉଡୁଛି ବାନା...

(ଗୀତର ସ୍ୱର ସହ ପ୍ରବେଶ କରିଛି ମଞ୍ଚକୁ) ।

ସୀମା    କୁଆଡ଼େ ଯାଇଥିଲୁ କିରେ ?

ମାଗୁ :    ସଂଜ ଦବାକୁ ଯାଇଥିଲି ପରା ।

ସୀମା    (ହସି) ସଂଜ । ଏଇଟା କ'ଣ ଗାଁ ହେଲା ? ସଂଧ୍ୟାବେଳେ ଚାରିଆଡ଼େ ବିଜୁଳି ଆଲୁଅର ରୋଷଣୀ ଯାର ସଂଜ ଦିଆ ଚାଲିଚି ।

ମାଗୁ    ତମେ ଦେଖିନ କି ଦେଇ । ବେଲ ଗଛ ମୂଳେ ଚଉରାଟାଏ କରି ଦେଇଛି; ସହର ହେଲେ କ'ଣ ହେଲା, ତୁଳସୀ ଚଉରା ନ ଥିଲେ କି' ଘର । ଏଇଠିତ ପୁଣି ମନ୍ଦିରକୁ ନିଇତି ଶହ ଶହ ଲୋକ ଯାଉଚନ୍ତି ।

ସୀମା ହଉ ତୁ' ଗଲୁ ଚପ୍ ଦି'ଟା ଛାଣି ଦବୁ ।

ମାଗୁ ଖାଲି ଚପ୍ ।

ସୀମା ହଁ ଆମେ ପରା ଆଜି ରବିବାବୁଙ୍କ, (ବହିଥାକ, ଭିତରେ କିଛି ଖୋଜୁଥିଲେ) ଘରକୁ ଭୋଜି ଖାଇଯିବୁ ।

ମାଗୁ : ହେଲେ ବାବୁଙ୍କର ଆସିବାକୁ ତ ଡେରି ଅଛି ।

ସୀମା ନାଇଁ ସେ ଆଜି ଜଲଦି ଆସିବେ; ତୁ ଯାଆ–

(ମାଗୁ ଭିତରକୁ ଗଲା)

ସୀମା (ଖୋଜୁ ଖୋଜୁ) କୁଆଡ଼େ ଗଲା ଯେ– ଏଇଠି ସକାଳେ ପଡ଼ିଥିଲା । (ପୁଣି ଘଣ୍ଟାକୁ ଦେଖି) ମାଗୁ ! ମାଗୁ !

ମାଗୁ (ପ୍ରବେଶ) କ'ଣ ଦେଇ ? କ'ଣ ଖୋଜୁଛ ?

ସୀମା କାର୍ଡ଼ଟା କୁଆଡ଼େ ଗଲା କିରେ ? ରବିବାବୁ ଯେଉଁ ନାଲି କାର୍ଡ଼ଟା ଦେଇଥିଲେ । ଛଅଟାରେ କି ସାତଟାରେ–

ମାଗୁ : ଭିତର ଘର ଟେବୁଲ ତଳେ କ'ଣ ଗୋଟାଏ ପଡ଼ିଥିଲା ।

ସୀମା : ଦେଖିଲୁ ।

(ମାଗୁ ଯାଇଛି– ସୀମା ବସିପଡ଼ି ଟେପ୍ ରେକର୍ଡ଼ର ଖୋଲିଚି । ସୁମଧୁର ଗୀତର ସ୍ୱର– ମାଗୁ ଆଣି କାର୍ଡ଼ ଦେଇଛି ଓ ଚାଲିଯାଇଛି । କାର୍ଡ଼ଟି ଦେଖିସାରି ଗୀତର ତାଳେ ତାଳେ ଗୋଡ଼ ହଲେଇଛି–ଏତିକି ବେଳେ ପ୍ରଶାନ୍ତ ଆସିଛି । ଦେଖୁଛି ସୀମା ଗୀତରେ ମଗ୍ନ– ଚୁପ୍‌ଚାପ୍ ଡାଇରିଟିକୁ ରଖିଛି ଓ ବସିଲାବେଳେ ସୀମା ତାକୁ ଦେଖି ଦେଇଛି)

ସୀମା : ମୁଁ ଜାଣିଛି ତୁମେ ଠିକ୍ ବେଳେ ଆସିବ । ତାଙ୍କର ସାତଟାବେଳେ ରିସେପ୍‌ସନ । ତମେ ଫ୍ରେଶ୍ ହୋଇଯାଅ । ଆଉ ହଁ– ଅନେକ ଦିନ

ହବ- ବାହାଘର ପର ଠୁଁ ଆମ ଘରର ପ୍ରେଜେଣ୍ଟେଡ୍ ଟା ପିନ୍ଧିନ- ସେଇଟା କାଢ଼ି ଦେଇଛି- ମୁଁ ତ ଘରୁ ଆସିବା ବେଳର ମାଟଟା-ପୁଣି ଥରେ ଆଜି ବର କନିଆଁ ବେଶ ସାଜିବା- ହେଲା- ଭାରି ସୁନ୍ଦର ଦିଶିବା-

(ପ୍ରଶାନ୍ତ ଚୁପ୍‌ଚାପ୍ ବସିଛି- ଜୋତା ଖୋଲିଛି ଅନ୍ୟମନସ୍କ- ସୀମା ଟେପ୍‌ଟାକୁ ବନ୍ଦ କରି ଦେଇଛି) ଏଁ କ'ଣ ହେଲା ? ଏମିତି କ'ଣ ଦେଖାଯାଉଛ ? ଅଫିସ୍‌ରେ କିଛି ଗଣ୍ଡଗୋଳ ହେଲା କି ?

ପ୍ରଶାନ୍ତ : ବାପାଙ୍କ ଦେହ ଖରାପ ।

ଆମକୁ ଆଜି ରାତି ଗାଡ଼ିରେ ଗାଆଁକୁ ଯିବାକୁ ପଡ଼ିବ ।

(ଟେଲିଗ୍ରାମ ସୀମା ହାତକୁ ଦେଇଛି) ମୁଁ ଟିକେଟ୍ ଦି'ଟା କରି ଆଣିଛି ।

ସୀମା (ଟେଲିଗ୍ରାମ୍ ପଢୁ ପଢୁ) ଏ ଟେଲିଗ୍ରାମ୍ କିଏ କରିଛନ୍ତି ?

ପ୍ରଶାନ୍ତ : ସୁରକକା । ଆଉ କିଏ ଅଛି କରିବ ? ମତେ କାଇଁ କେମିତି କେମିତି ଲାଗୁଚି ।

ବୋଉ ଦେହ ଖରାପ ବେଳେ ସୁରକକା ଏମିତି ଟେଲିଗ୍ରାମ୍ କରିଥିଲେ ।

ମୁଁ ଗଲାବେଳକୁ ସବୁ ଶେଷ । ତମେ ରେଡ଼ି ହୋଇଯାଅ ସାତଟା ଗାଡ଼ିରେ ଆମେ ଚାଲିଯିବା ।

ସୀମା ଆଜି ପରା ରବିଭାଇଙ୍କ ଚତୁର୍ଥୀ ଭୋଜି ।

ପ୍ରଶାନ୍ତ : ହଁ, ମୋର ମନେ ଅଛି ।

ସୀମା ତାଙ୍କ ବାହାଘର ଦିନ ତମ ଗାଇଡ୍ ଆସୁଛନ୍ତି କହି ତମେ ବରଯାତ୍ରୀରେ ଗଲନି ପରା ।

ଆଜି ନଗଲେ ସେ କ'ଣ ଭାବିବେ ?

ପ୍ରଶାନ୍ତ କ'ଣ ଭାବିବେ ?

ସେ କ'ଣ ପରେ ଜାଣିପାରିବେନି ଯେ,

ଆମ ବାପାଙ୍କ ଦେହ ଖରାପ ଥିଲା, ଆମେ ହଠାତ୍ ଗାଁକୁ ଚାଲିଗଲେ ବୋଲି–

ସୀମା ଆଜି ଛାଡ଼ି କାଲି ସକାଳୁ ଗଲେ ହବନି ।

ସେମିତି ସାଂଘାତିକ ହେଇଥିଲେ ବାପାଙ୍କୁ ନିଶ୍ଚୟ ସୁରକ୍ଷା ଡାକ୍ତରଖାନାରେ ଆଡ଼ମିଶନ୍ କରିଦେଇଥିବେ । ବାପା ତ ମିଲେଟାରୀ ଲୋକ ।

ହୁଏତ ଦେହ ଭଲ ନ ଥାଇ ପାରେ; କିନ୍ତୁ ସିଏ ଶଯ୍ୟାଶାୟୀ ହେଇ ନ ଥିବେ ।

ପ୍ରଶାନ୍ତ (ଚମକି ଉଠିଛି, କିନ୍ତୁ ନିଜକୁ ଚଳେଇ ନେଇ) ମତେ ବୁଝିବାକୁ ଚେଷ୍ଟାକର ସୀମା ! ବାପାଙ୍କର ଓଲଡ୍ ଏଜ୍ କେତେବେଳେ କ'ଣ ଘଟିବ– କହିହବନି– ମନ କହୁଚି– ମୁହୂର୍ତ୍ତକେ ଆମେ ଗାଁରେ ପହଞ୍ଚ ଯାଆନ୍ତେ କି ।

ସୀମା ତମେ ଏତେ ବ୍ୟସ୍ତ ହୁଅନି । କାଲି ସକାଳୁ ଆମେ ଯିବା ।

ପ୍ରଶାନ୍ତ : ଠିକ୍ ଅଛି ମୁଁ ଆଜି ଏକା ଯାଉଚି । ତମେ ଏଠି ତମ ରବିଭାଇଙ୍କ ଭୋଜିରେ ଯୋଗଦିଅ । ବାସ୍, ତମେ ଯାହା ଚାହୁଁଛ କର ।

ସୀମା ମୁଁ ଏକା ଯିବି ? ଆମ ବାହାଘର ବର୍ଷେ ପୂରିନି । ତମକୁ ନ ନେଇ ଏକା ଗଲେ ଲୋକେ କ'ଣ ଭାବିବେ ?

ପ୍ରଶାନ୍ତ : ତମକୁ ନ ନେଇ ମୁଁ ଏକା ଗାଆଁକୁ ଗଲେ ବି ଲୋକମାନେ ସେହି ଏକାକଥା ଭାବିବେ !

ସୀମା : ଦେଖ । ରବିଭାଇଙ୍କୁ ମୁଁ ନିଜ ଭାଇ ବୋଲି ଭାବେ । ତମେ ତ ଜାଣ ଆମ ବାହାଘର ତାଙ୍କରି ଯୋଗୁ ସମ୍ଭବହୋଇଛି । ଆଜି ଯଦି ତାଙ୍କ ବାହାଘରରେ ଆମେ ନ ଯିବା, ତା' ହେଲେ...

ପ୍ରଶାନ୍ତ : ତା'ହେଲେ ସୃଷ୍ଟି ପ୍ରଳୟ ହୋଇଯିବ– ଆକାଶ ଛିଡ଼ି ପଡ଼ିବ– ତମ ଭାଇଙ୍କ ଚତୁର୍ଥୀ ଭୋଜି ବନ୍ଦ ହୋଇଯିବ । ଏୟାତ– (ମାଗୁ ପ୍ରବେଶ କରିଛି) ମାଗୁ ମୋ ଆଟାଚ୍ ସଜାଡ଼ି ଦେ । (ମାଗୁ ଚାଲିଯାଇଛି)

[ ପ୍ରଶାନ୍ତ ଭିତରକୁ ଯାଇଛନ୍ତି । ସୀମା ଚୁପ୍‌ଚାପ୍ ବସି ପଡ଼ିଛି ସୋଫା ଉପରେ– ଯାଙ୍ଗେ ସାଙ୍ଗେ ପ୍ରଶାନ୍ତ ଫେରିଛନ୍ତି ଆଟାଚ୍ ଧରି– ଆଟାଚ୍‌ଟିକୁ ବନ୍ଦ କରିଛନ୍ତି– ଟିକିଏ ଶାନ୍ତ ଜଣା ପଡ଼ୁଛନ୍ତି ]

ପ୍ରଶାନ୍ତ ମୁଁ ଯାଉଛି । ତମେ ଯିବ । ରବିଭାଇଙ୍କୁ କହିବ, ମୁଁ ଏମିତି ଟେଲିଗ୍ରାମ୍ ପାଇ ଗାଆଁକୁ ଚାଲିଗଲି ।

ସୀମା (ନୀରବ)

(ପ୍ରଶାନ୍ତ ଚାଲିଯାଇଛି– ପଛେ ପଛେ ମାଗୁ ଚପ୍ ଧରି ପ୍ରବେଶ)

ମାଗୁ : ବାବୁ ଚାଲିଗଲେ କି ଦେଈ ?

ସୀମା : (ନୀରବ)

ମାଗୁ ଖାଇବାକୁ କହିଲ ନି ?

ସୀମା : ତୁ କହିଲୁନି...ହୁଁ

(ରାଗରେ ପ୍ରସ୍ଥାନ)

(ଅନ୍ଧାର)



## ଦ୍ୱିତୀୟ ଦୃଶ୍ୟ

*(ପ୍ରଶାନ୍ତ ବାବୁଙ୍କ ଡ୍ରଇଂରୁମ୍- ସେଇ ସାଜସଜ୍ଜା- ସମୟ ଅପରାହ୍ନ- ମାଗୁ ସୋଫା ଉପରେ ସମ୍ରାଟ ଠାଣିରେ ବସିଛି । ମୁହଁରେ ଏକ ଗୀତର ସ୍ୱର)*

ମାଗୁ : ବାଧିଲା ଜାଣି କ୍ଷମା, କର ନୋହିଲେ ରମା, ରମଣ ଦଣ୍ଡେ ଦିଅ ଟାଳି । ତୁମ୍ଭକୁ ଜଗନ୍ନାଥ, ଆଜି ମୋ ମନୋରଥ, ଭରତି କରି ଦେବି ଗାଳି ହେ

ପ୍ରଶାନ୍ତ (ବାହାରୁ) ମାଗୁ ! ମାଗୁ !

ମାଗୁ : (ଠିକ୍ ଭାବେ ଶୁଣି ନ ପାରି) ତୁମ୍ଭକୁ ଜଗନ୍ନାଥ, ଆଜି ମୋ ମନୋରଥ

ପ୍ରଶାନ୍ତ : ମାଗୁ । ସୀମା... ସୀମା...

ମାଗୁ : (ହଠାତ୍ କେଉଁଆଡୁ ଶବ୍ଦ ଆସୁଛି ଜାଣି ନ ପାରି) ଯାଉଛି ।

(ଘର ଭିତରକୁ ପଶି ଯାଇଚି ଓ ପୁଣି ବାହାରି ଆସି ବାହାରକୁ ଯାଇଛି- ସାଙ୍ଗେ ସାଙ୍ଗେ ପ୍ରଶାନ୍ତ- ବୃଦ୍ଧ ମନମୋହନ ପ୍ରବେଶ କରିଛନ୍ତି- ମାଗୁ ଓ ପ୍ରଶାନ୍ତ ଦୁଇ ହାତକୁ ଧରିଛନ୍ତି- ସୋଫାରେ ବସାଇ ଦେଇଛନ୍ତି)

ମନମୋହନ : (ବସୁ ବସୁ) ଠିକ୍ ଅଛି । ଆଇ ଆମ୍ ଓକେ

(ପ୍ରଶାନ୍ତକୁ) ତୁ ଯାଆ ଧୁଆ ଧୋଇ ହୋଇ ପଡ଼ିବୁ । ମୁଁ ଟିକିଏ ରେଷ୍ଟ୍ ନେଉଛି । ବୋହୂ କୁଆଡ଼େ ଗଲା ।

ପ୍ରଶାନ୍ତ : ଦେଈ କାହାନ୍ତି କିରେ ?

ମାଗୁ ରବିବାବୁ ଆଇଥିଲେ ଯେ, ଦେଈ ତାଙ୍କ ଗାଡ଼ିରେ ବସି କୁଆଡ଼େ ଗଲେ । କହିଲେ ଏଇନେ ଆଉଚି ବୋଲି ।

ପ୍ରଶାନ୍ତ   କେତେବେଳୁ ଗଲେଣି ?

ମାଗୁ   :   ଘଣ୍ଟାଏ ହେଲା ।

ପ୍ରଶାନ୍ତ   ସେ କ'ଣ ଜାଣିନି, ଆମେ ଆଜି ଆସିବୁ ବୋଲି ?

ମନ   ଯାଇଚି ଆସିବ । ତୁ ଏମିତି ବ୍ୟସ୍ତ ହଉଚୁ କାହିଁକି ?

ତୋ'ର ସବୁବେଳେ ଖାଲି ଏଇ ଗୋଟାଏ...

ଆରେ ଆମେ ଯେତେବେଳେ କ୍ୟାମ୍ପରେ ରହିଲୁ, କାହାର କ'ଣ ସାହାଯ୍ୟ ଦରକାର କରୁଥିଲୁ । ଗାଁରେ ଏତେଦିନ ମୁଁ ଥିଲି । ଏକା- ସିଙ୍ଗଲ୍ ହାଣ୍ଡେଡ୍- ହାତରେ ରୋଷେଇ କରିବା-

ଗାଁ ଭିତରେ ମର୍ଣ୍ଣିଂ ଇଭିନିଂ ୱାକ୍ ସବୁ ଡିସିପ୍ଲିନ୍‌ଡ୍ ।

ପ୍ରଶାନ୍ତ   ମାଗୁ ! ବାପାଙ୍କ ପାଇଁ ଭିତର ଘରେ ବିଛଣା କରିଦେ । ବାଥ୍‌ରୁମ୍‌ଟା ଦେଖେଇ ଦବୁ ।

ମୁଁ ଯାଉଛି ଡାକ୍ତର ଡାକି ଆଣେ ।

ମନ   ଆରେ । ଏତେ ଜଲଦି ଯିବା ଦରକାର ନାହିଁ । ମୁଁ ପରା ତତେ କହିଲି ଆଗେ ଫ୍ରେସ୍ ହୋଇ ଯିବାକୁ; ଡାକ୍ତର ପାଖକୁ ଯିବୁ ଏମିତି ? ବି ନିଟ୍ ଏଣ୍ଡ୍ କ୍ଲିନ୍ ।

ପ୍ରଶାନ୍ତ   ନାଇଁ ବାପା- ଏଇ ଆଗ ଛକରେ ତାଙ୍କ କ୍ଲିନିକ୍, ଏବେ ରୋଗୀ ଆସି ନ ଥିବେ । ତାଙ୍କୁ ଏଇଠିକି ଡାକି ଆଣିବି । ଆପଣ କାହିଁକି ଯାଇ ସେଠି ଲାଇନ୍ ଦେବେ ।

(ମାଗୁକୁ) ମୁଁ ଯାଉଚି । ବାପାଙ୍କୁ ହରଲିକ୍‌ସ ଜରି ଦବୁ । (ପ୍ରସ୍ଥାନ)

ମନ   :   ଆଚ୍ଛା ମାଗୁ ।

ମାଗୁ   :   ସାଆନ୍ତେ ।

ମନ : ଆଚ୍ଛା ଆମ ପ୍ରଶାନ୍ତ ବୋହୂକୁ କିଛି ଏପଟ ସେପଟ କଥା କହୁନି ତ ?

ମାଗୁ କାଇଁ ନାଇଁ ତ ।

ମନ କାଇଁ ପଚାରିଲିକି ତା'ର ଗୋଟାଏ ଡିସିପ୍ଲିନଡ୍ ନାହିଁ । ବହି ପଢୁଥିବ ତ ପଢୁଥିବ । ଲେଖୁଥିବ ତ ଲେଖୁଥିବ । କାହାକୁ କ'ଣ କହିବ, ସେଥିରେ ଆଗ ପଛ ଚିନ୍ତା ନାହିଁ । ବୋହୂଟା ତ ଯା ପାଖରେ ଅଡୁଆରେ ପଡୁଥିବ ?

ମାଗୁ ନାଇଁ ସାଆନ୍ତେ, ବାବୁତ କାଇ ସିମିତି କିଛି ଜଣା ପଡ଼ନ୍ତି ନାହିଁ । ସବୁ ତ ଠିକ୍ ଠାକ୍ ଚାଲିଛି ।

ମନ ଆଚ୍ଛା ! ଆଚ୍ଛା !

ବାହା ହେଲା ପରେ ପ୍ରଶାନ୍ତର କିଛି ଚେଞ୍ଜ୍ ହେଇଛି ତା'ହେଲେ–

[ ଏତିକିବେଳେ ସୀମା ପ୍ରବେଶ କରିଛି– ମନମୋହନକୁ ଦେଖି ନମସ୍କାର କରିଛି ]

ସୀମା ମୁଁ ଟିକିଏ ରବିଭାଇଙ୍କ ଘରକୁ ଯାଇଥିଲି । ଇଏ ତ କାଲି ଗଲେ । ଆପଣଙ୍କୁ ଆଣିବେ କି ନାହିଁ ମତେ କିଛି କହିକି ଗଲେନି ।

ମନ : (ମାଗୁକୁ) ମୁଁ କ'ଣ କହୁଥିଲି ? ହୁଁ... ପ୍ରଶାନ୍ତଟା ସବୁବେଳେ ସେଇଆ । କୁଆଡ଼େ ଯିବ, କ'ଣ କରିବ– କାହାକୁ କିଛି ଜଣେଇବ ନାହିଁ । (ସୀମାକୁ) ମୁଁ ଠିକ୍ ଅଛି ମା–ତୋ'ର ବ୍ୟସ୍ତ ହେବାର କିଛି ନାହିଁ ।

ସୀମା : ଟେଲିଗ୍ରାମ୍‌ଟା ପାଇ ଆମେ ବଡ଼ ବ୍ୟସ୍ତ ହୋଇ ପଡ଼ିଥିଲୁ ।

ମନ ମୁଁ ଠିକ୍ ଜାଣିଚି । କିନ୍ତୁ ସୁରଟା ଗୋଟାଏ ସୁଦ୍ଧୁ ତୁରତୁରିଆଟାଏ । କଥା କଥାକେ ଖାଲି ଟେଲିଗ୍ରାମ୍ ।

ସୀମା (ମନମୋହନଙ୍କ ଦେହରେ ହାତମାରି) ଆରେ ! ଆପଣଙ୍କ ଦେହରେ ତ ଟେମ୍ପେରଚର୍ ଟେମ୍ପେରଚର୍ ଅଛି ।

ମାଗୁ    ବାବୁ ଯାଇଚନ୍ତି ମରା ଡାକ୍ତର ଡାକିବାକୁ ।

ମନ  :  ଧେତ୍ ! ଡାକ୍ତର ଡାକିବ ! ଆରେ ଇୟେ ଗୋଟାଏ ଟେମ୍ପରଚର୍ ଫ୍ରଣ୍ଟଲାଇନ୍‌ରେ ଆମେ ଯେତେବେଳେ ତିନିଦିନ କାଳ ସେମିତି ବିନା ଖିଆପିଆରେ ରହିଗଲୁ ମୁଁ ଅନୁଭବ କଲି ମୋ ଦେହର ଟେମ୍ପରଚର୍ ଖୁବ୍ ବଢ଼ିଯାଇଛି- ବଟ୍ ହୁଁ କେୟାର୍‌ସ୍ ।ଏପଟେ ସେପଟେ ସାଏଁ ସାଏଁ ବୁଲେଟ୍ ପାଶ୍ କରି ଚାଲିଯାଉଥାଏ ।ଆଖି ପିଛୁଳାକେ ଟପ୍‌ଟାପ୍ ତିନିଚାରି ଗୁଳି ଆସି ମୋ ଗୋଡ଼ରେ ଗଳିଗଲା, ଖାଲି ବ୍ଲଡ୍ ଆଉ ବ୍ଲଡ୍ କିନ୍ତୁ ମୁଁ ଷ୍ଟେନ୍‌ଗନ୍‌ର ଶେଷଗୁଳି ଫୁଟିବା ପର୍ଯ୍ୟନ୍ତ ଯୁଦ୍ଧ କରି ଚାଲିଲି; ତା' ପରେ ଘୁଷୁରି ଘୁଷୁରି ପାଞ୍ଚ କିଲୋମିଟର ଯାଇ କ୍ୟାମ୍ପରେ ପହଞ୍ଚିଲି, ବୁଝିଲୁ ! (ମାଗୁ ଖୁବ୍ ଭୟଭୀତ ହୋଇପଡ଼ିଛି-ମନମୋହନ ଜୋରରେ ହସିଛନ୍ତି)

ସୀମା    ବାପା ଚାଲନ୍ତୁ ଭିତରକୁ ।

ମନ    ହଁ ମୋତେ ଟିକିଏ ବାଥ୍‌ରୁମ୍ ଦେଖେଇ ଦେ'ତ ।

ମାଗୁ  :  ଆସ ସାଆନ୍ତେ !

[ ତିନିଜଣଙ୍କ ପ୍ରସ୍ଥାନ- ଠିକ୍ ପରେ ପରେ ଡାକ୍ତରଙ୍କୁ ଆଣି ପ୍ରଶାନ୍ତଙ୍କର ପ୍ରବେଶ ]

ପ୍ରଶାନ୍ତ  :  ମାଗୁ ! ମାଗୁ ! ବସନ୍ତୁ ଡାକ୍ତରବାବୁ ! ଟିକିଏ ଅପେକ୍ଷା କରନ୍ତୁ । (ମାଗୁ ଆସିଛି) ବାପା କ'ଣ କରୁଛନ୍ତି ?

ମାଗୁ  :  ଗାଧୁଆ ଘରେ ଅଛନ୍ତି । ଦେଈ ଆଇଲେଣି ।

ପ୍ରଶାନ୍ତ  :  (ରାଗମିଶା ଦୃଷ୍ଟିରେ ମାଗୁକୁ ଚାହିଁଛି- ମାଗୁ ଡରିଯାଇଛି ଓ ଚାଲିଯାଇଛି) ଟିକିଏ ଅପେକ୍ଷା କରନ୍ତୁ ଡାକ୍ତରବାବୁ । ଏଇନେତ ଗାଆଁରୁ ବାପାଙ୍କୁ ଆଣିଲି- ଟିକିଏ ଖାଲି ଫ୍ରେସ୍ ହୋଇ.....

ଡାକ୍ତର : ସେ କ'ଣ ସବୁବେଳେ ଗାଆଁରେ ରୁହନ୍ତି ?

ପ୍ରଶାନ୍ତ : ନାଇଁ ଏଇ ତିନି ଚାରିବର୍ଷ ହେଲା ରହୁଛନ୍ତି– ଆଗରୁ ମିଲିଟାରୀରେ ଥିଲେ ।

ଡାକ୍ତର : ନାଇଁ ଯେ, ଲାଷ୍ଟ ଉଇକ୍‌ରେ ଜଣେ ରିଟାୟାର ମିଲିଟାରୀ ଲୋକ ମୋ କ୍ଲିନିକ୍‌କୁ ଆସିଥିଲେ । ଛାଡ଼ନ୍ତୁ– ମତେ ଯାହା ହଇରାଣ କରିଛନ୍ତି– ତାଙ୍କ ପଛରେ ଆସିଥିବା ଜଣେ ରୋଗୀକୁ ମୁଁ ଚେକ୍ ଅପ୍ ପାଇଁ ଯେମିତି ଡାକିଚି, ସାଙ୍ଗେ ସାଙ୍ଗେ ବିରାଟ ଗୋଟାଏ ପାଟି କରି କହିଲେ, ଏଠି ଡିସିପ୍ଲିନ୍‌ଡ଼୍ ନାହିଁ– ଆମେ ଏଠି ଲାଇନ୍‌ରେ ଠିଆ ହୋଇଚୁ– ବ୍ୟାକ୍ ଡୁଅର୍‌ରେ ଆଉ ଜଣେ ! ଆର୍ମି ହୋଇଥିଲେ ଏମିତି ଡାକ୍ତରକୁ କୋର୍ଟ ମାର୍ଶାଲ୍ କରି ଦେଇଥାଆନ୍ତି । (ଉଭୟ ହସିଛନ୍ତି)

ମନ : (ପ୍ରବେଶ) କିଏ କୋର୍ଟ ମାର୍ଶାଲ ହେବ ହୁ ଇଜ୍ ? ୟେସ୍, କିଏ ?

(ମାଗୁ ଓ ସୀମା ଧରି କି ଆଣିଛନ୍ତି)

ପ୍ରଶାନ୍ତ : ବାପା..... ଡାକ୍ତର ବାବୁ ଆସିଛନ୍ତି ।

ମନ : ଓଃ ! ୟେସ୍ (ଡାକ୍ତରଙ୍କୁ) ଆପଣ କ'ଣ ଆଗରୁ ଆର୍ମିରେ ଥିଲେ ?

ଡାକ୍ତର : ନାଇଁ ସାର୍ !

ମନ : ତା' ହେଲେ, କୋର୍ଟ ମାର୍ଶାଲ୍ କଥା କାହିଁକି ଉଠିଲା ?

ଡାକ୍ତର : ଏମିତି ମୋର ଜଣେ ପେସେଣ୍ଟ୍ କଥା କହୁଥିଲି । (ପରୀକ୍ଷା କଲେ) ଆଚ୍ଛା ! ଆଗରୁ କୋଉଠି ଟ୍ରିଟ୍‌ମେଣ୍ଟ୍ ହେଉଥିଲେ ?

ପ୍ରଶାନ୍ତ : ହଁ, ଗାଆଁ, ପିଏଚ୍‌ସିରେ ।

ମନ : ଦ୍ୟାଟ୍ ବ୍ଲଡି (ଡାକ୍ତର ଚମକି ପଡ଼ିଛନ୍ତି) ପେରି--ଫେରିରେ ଯୋଉ ଡାକ୍ତର ସବୁ ଅଛନ୍ତି, ରୋଗ ଚିହ୍ନିବା ପରିବର୍ତ୍ତେ ଖାଲି ପଇସା ଚିହ୍ନିବାରେ ବ୍ୟସ୍ତ– କୋର୍ଟ ମାର୍ଶାଲ– ଖାଲି କୋର୍ଟ ମାର୍ଶାଲ୍ ଦରକାର ।

ଡାକ୍ତର (ଦେଖି ସାରିବା ପରେ) ଠିକ୍ ଅଛି, ଆପଣ ଟିକିଏ ଶୋଇ ରହନ୍ତୁ । ବେଶୀ ସମୟ ଏପଟ ସେପଟ ହେବେନି ବ୍ଲଡପ୍ରେସର ନର୍ମାଲ ଅଛି । ବ୍ୟସ୍ତ ହେବାର ନାହିଁ– (ମା:ଗୁ ଓ ସୀମା ମନମୋହନଙ୍କୁ ନେଇ ଯାଇଛନ୍ତି), (ପ୍ରେସ୍କ୍ରିପ୍ସନ ଲେଖୁ ଲେଖୁ) ଟିକିଏ ବ୍ଲଡ୍ ଷ୍ଟୁଲ ୟୁରିନ୍ ଟେଷ୍ଟ କରି ଦିଅନ୍ତୁ; ମ୍ୟାଲେରିଆ ଭଳି ଜଣା ପଡୁଛି । ଗାଆଁରେ ଥିଲେ ତ । ଏ ଔଷଧ ଦି'ଟା ଆଜି ଦିଅନ୍ତୁ । report ଆସିଲା, ପରେ ଅନ୍ୟ ଔଷଧ ଲେଖିବା । ଆଜି ଲାଇଟ୍‌ଫୁଡ୍ ଦେବେ । ଠିକ୍ ହୋଇଯିବ ।

(ଉଭୟେ ପ୍ରସ୍ଥାନ)

**(ଅନ୍ଧାର)**



## ତୃତୀୟ ଦୃଶ୍ୟ

*(ପୂର୍ବ ଦୃଶ୍ୟର ସାଜସଜ୍ଜା–ସମୟ ଅପରାହ୍ନ - ଆଲୋକ ଆସିବା ବେଳକୁ ମାଗୁ ସବୁ ସଜାଡ଼ିବାରେ ବ୍ୟସ୍ତ – ସୋଫା, ର୍ୟାକ୍‌, ବହି ଇତ୍ୟାଦିକୁ ଝଡ଼ାଝଡ଼ି କରୁଛି ।)*

ମାଗୁ : ଆରତ ସୁରେ ବାରେ କରେ ମିନତିରେ... ଚକା ନୟନ ଚାହାଁ ମାଗେ ମାଗୁଣିରେ... (ଫୋନ୍‌କୁ ଝାଡ଼ିଛି ଓ ରିସିଭରକୁ ଉଠେଇ) କଳା କଳା ଆଖି ଦୁଇ ମନ କେତେ ଖୋଜିଲା... (ପୁଣି ରଖିଦେଇଛି- ବୁଲିଲା ବେଳକୁ ଫୋନ୍ ରିଙ୍ଗ୍ ହେଲା)... ଇଲୋ... ଇଲୋ... ଇଲୋ... ଆଃଜ୍ଞା ଆସି ନାହାନ୍ତି... ମୁଁ ଆଜ୍ଞା ମାଗୁ- ମାଗୁଣି ଚରଣ... ଆଜ୍ଞା ଅଛନ୍ତି... ଡାକି ଦେବି (ତା'ପରେ କ୍ରେଡଲ୍ ଉପରେ ଫୋନ୍ ଥୋଇ ଦେଇଚି ଓ ସୀମାକୁ ଡାକିବାକୁ ଯାଇଛି) ଦେଈ ! ଦେଈ ! ଫୁନ୍ ଆଇଚି... ଫୁନ୍...

ସୀମା (ପ୍ରବେଶ) କିଏ ଫୋନ୍ କରିଛନ୍ତି ? (ଦେଖିଲେ, ଫୋନ୍ କ୍ରେଡ଼ଲ୍ ଉପରେ ଥୁଆ ହୋଇଚି) ଯା... କେତେ ତତେ ଶିଖେଇବି, ଏଁ... ? କେତେ କରି କହିଲି; କିଏ ଫୋନ୍ କଲେ ରିସିଭରଟାକୁ (ଦେଖେଇ ଦେଇ) ଏମିତି ରଖିବୁ, ତା'ପରେ ମତେ ଡାକିବୁ । ଏତିକି ମନେ ରହିଲାନି ? ଗୀତଗୁଡ଼ା ତ ବେଶ୍ ମନେ ରହୁଚି । କଟି ତ ଗଲା, ଆଉ କ'ଣ ଶୁଣିବି ।

(ପ୍ରସ୍ଥାନ)

[ ମାଗୁ ଫୋନ୍‌କୁ ଦେଖିଛି, କ୍ରେଡଲ୍ ଉଠେଇଛି ଓ ରଖିବାର ଅଭିନୟ କରିଛି- ପୁଣି ଗୀତ ଗାଇବାକୁ ଯାଉଥିଲା, ସୀମାର ଟିପ୍‌ପଣୀ କଥା ମନେ ପକେଇ ବନ୍ଦ ହୋଇଯାଇଚି- ଏତିକିବେଳେ ପୁଣି ରିଙ୍ଗ୍ ହେଇଚି ଓ ମାଗୁ ଧରିବାକୁ ଗଲା ପୂର୍ବରୁ ସୀମା ପହଞ୍ଚି ଯାଇଛନ୍ତି ଓ ଧରିଛନ୍ତି ]

ମାଗୁ : ହେଲୋ... ହଁ... କହୁଚି... ନମସ୍କାର ଆଜ୍ଞା ! ନାଇଁ ଆସି ନାହାନ୍ତି । ଛ'ଅଟା ସାତଟା ହେଇଯିବ କହୁଥିଲେ ଷ୍ଟେଟ୍ ଲାଇବ୍ରେରୀ ଆଡ଼େ ଯିବେ ବୋଲି– ଅଫିସରେ ନାହାନ୍ତି– ଆଚ୍ଛା...ଆଚ୍ଛା...ହଁ, ହଁ... କହିଦେବି । ନମସ୍କାର । (ରଖି ଦେଇଛନ୍ତି)

ମାଗୁ : ଏଥର ଆଉ ଭୁଲ୍ ହେବନି ଦେଈ ।

ସୀମା : କ'ଣ ଭୁଲ୍ ହବନି ?

ମାଗୁ : ଏଇ, ହେଲୋ... ନମସ୍କାର...

ସୀମା : ଧେତ୍ ! (ଭିତରକୁ ଯାଇଛନ୍ତି)

ମାଗୁ : କ'ଣ କିଛି ଭୁଲ୍ ହେଇଗଲାକି ଆଉ ! (ମନେ ପକେଇବାକୁ ଚେଷ୍ଟା କରିଛି) ।

[ ପ୍ରଶାନ୍ତର ପ୍ରବେଶ ]

ମାଗୁ ଦେଈ ! ବାବୁ ଆଇଲେଣି ।

[ ହଠାତ୍ ସୀମା ପ୍ରବେଶ କରିଛନ୍ତି– ହାତରେ ଗୋଟିଏ ଲୁହା ଖଡ଼ିକା– ସେଇଟାକୁ ମାଗୁକୁ ଦେଇଛନ୍ତି– ମାଗୁ ଚାଲିଯାଇଛି । ]

ସୀମା : ଆଜି କ'ଣ ଏତେ ବେଳାବେଳି ?

ପ୍ରଶାନ୍ତ : ବାପା କ'ଣ କରୁଛନ୍ତି ?

ସୀମା : ଶୋଇଛନ୍ତି । ତମେ କ'ଣ ଅଫିସ୍‌ରେ ନ ଥିଲ କି ?

ପ୍ରଶାନ୍ତ : କାହିଁକି ?

ସୀମା : କଟକରୁ ପ୍ରଫୁଲ୍ଲବାବୁ ଫୋନ୍ କରୁଥିଲେ । କହିଛନ୍ତି ତମେ ତାଙ୍କୁ ଫୋନ୍ କରିବ ।

ପ୍ରଶାନ୍ତ : ମୁଁ ପରା କଟକ ଯାଇଥିଲି । କାମ ସରିଗଲା । ଆଉ ଅଫିସ୍ ଗଲିନି ।

ସୀମା : ଭଲ କଲ ।

ପ୍ରଶାନ୍ତ ବାପାଙ୍କ ଦେହ କେମିତି ଅଛି ?

ସୀମା ଭଲ ଅଛି,... ଚାଲୁନ ଟିକିଏ ସିନେମା ଦେଖି ଆସିବା ।

ପ୍ରଶାନ୍ତ ବାରଟା ବେଳେ ବାପାଙ୍କର ଟେମ୍ପରଚର୍ ରେକର୍ଡ଼ କରିଛ ?

ସୀମା : ହଁ ।

ପ୍ରଶାନ୍ତ : ଦି'ଟା ବେଳର ?

ସୀମା ହଁ ।

ପ୍ରଶାନ୍ତ : ମେଡିସିନ୍ ଠିକ୍ ଠିକ୍ ଦେଇଛ ?

ସୀମା ହଁ !

ପ୍ରଶାନ୍ତ ହର୍‌ଲିକ୍ସ

ସୀମା : ହଁ...ହଁ...ହଁ...

ପ୍ରଶାନ୍ତ : କ'ଣ ହେଲା ?

ସୀମା : ତମେ କ'ଣ ଭାବିଚ ମୁଁ ତମର ପ୍ରାଇଭେଟ୍ ନର୍ସ ? ମୋର କ'ଣ ସେ ବାପା ନୁହନ୍ତି ? ତାଙ୍କୁ ଠିକ୍ ଠାକ୍ ଔଷଧ ଦେବା କ'ଣ ମୋର ଦାୟିତ୍ୱ ନୁହେଁ ? ତମେ ମୋତେ ଏତେ ପଚାରି ହଉଚ କାହିଁକି ? ତାଙ୍କୁ ଏତେ ହେପାଜତ୍ ତେବେ କରୁଚି କିଏ ?

(କାନ୍ଦିଛି)

ପ୍ରଶାନ୍ତ : ଆରେ ବାବା ! ପଚାରି ଦେଲିତ । ଏଥିରେ ରାଗିବାରେ କ'ଣ ଅଛି ! ଦେଖ, ମାଗୁଟା ମୂର୍ଖଲୋକ । ମୁଁ କ'ଣ କହୁଥିଲି କି, ତମେ ହିଁ ତ ବାପାଙ୍କୁ ମେଡିସିନ୍ ଠିକ୍ ଟାଇମ୍‌ରେ ଦବ । ନ ଦେଲେ ବାପା ମୋଟେ ଔଷଦ ଖାଇବେନି– ସେଇଥିପାଇଁ ପଚାରିଦେଲି । ଏଥିରେ ଏତେ ରାଗ ରୁଷା, ବାପାଙ୍କ ଦେହ ଭଲ ହେଇଯାଉ, ଯିବା, ସମସ୍ତେ ଯାଇ ଦିନେ ସିନେମା ଦେଖି ଆସିବା ।

ସୀମା : ହଁ, ସମସ୍ତଙ୍କୁ ନେଇ ! ଗାଆଁ ବାଲାଙ୍କୁ ସାଙ୍ଗରେ ନେଇ ଯାଉନ ।

(ଦ୍ରୁତ ପ୍ରସ୍ଥାନ)

(ପ୍ରଶାନ୍ତ ସୀମାକୁ ଚାହିଁ ରହିବା ଭିତରେ ଅନ୍ଧାର)



# ଚତୁର୍ଥ ଦୃଶ୍ୟ

*(ପୂର୍ବ ଦୃଶ୍ୟର ସେଇ ସାଜସଜ୍ଜା– କୌଣସି ଏକ ଛୁଟି ଦିନର ସକାଳ– ଆଲୋକ ଆସିବା ପରେ ଦେଖାଗଲା ମନମୋହନ ସୋଫାରେ ବସି ଇଂରାଜୀ ଖବର କାଗଜ ପଢୁଛନ୍ତି– ମାଗୁ ଗୁଣୁ ଗୁଣୁ ହୋଇ ଘର ଭିତରୁ ବାହାରକୁ ଯାଉଥିଲା– କ'ଣ ଭାବି ପୁଣି ଅଟକି ଗଲା ।)*

ମାଗୁ : ସାଆନ୍ତେ !

ମନ : ହଁ, କ'ଣ ହେଲା ?

ମାଗୁ ଆଜି ଦିହ ଭଲ ନାଗୁଚି ତ ?

ମନ କାଇଁ, ଆଗରୁ କ'ଣ ମୋ ଦେହ ଖରାପ ଥିଲା ?

ମାଗୁ ନାଇଁ ଯେ... ଆଚ୍ଛା ସାଆନ୍ତେ, ତେମେ ଯେତେବେଳେ ମିଲିଟେରୀରେ ଥିଲ,... କ'ଣ କହୁଥିଲି କି, କେତେ କ'ଣ ଘଟିଥିବ ଗୋଟିଏ ଗପ କହନ୍ତ ନି ?

ମନ (ଖବର କାଗଜଟି ରଖିଦେଇ) ଏଁ... ଗପ ? ଶୁଣିବୁ ?

ମାଗୁ ହଁ ।

ମନ : (ଟିକିଏ ଚିନ୍ତା କରି) ଶୁଣ୍ । ଯୋଉଥର ପାକିସ୍ଥାନ ସହିତ ଯୁଦ୍ଧ ଲାଗିଥାଏ, ଆମେ ସବୁ ବର୍ଡରକୁ ଚାଲିଯାଇଥାଉ– ଫ୍ରଣ୍ଟଲାଇନ୍ ମୋ ରେଜିମେଣ୍ଟଟା ପୂରାପୂରି ଶତ୍ରୁର ସାମ୍ନା ସାମ୍ନି । ରକେଟ୍ ମାଡ଼ରେ ଚାରିଆଡ଼େ ଖାଲି ଧୂଆଁ । କେହି କାହାରିକୁ ଦେଖିବାର ନାହିଁ– ଖାଲି ଆଗେଇ ଚାଲ– ଫରୱାର୍ଡ଼ ମାର୍ଚ୍ଚ– ଶତ୍ରୁପକ୍ଷ ସୈନ୍ୟ ସବୁ ଗଛ କାଟିଲାପରି ତଳେ ଗଡ଼ି ପଡୁଥାନ୍ତି । ଡେଡ୍ ବଡ଼ି– ଖାଲି ମୁର୍ଦ୍ଦାର– ସେଇ ମୁର୍ଦ୍ଦାରଙ୍କୁ ଦଳିଚକଟି

ମୁଁ ଆଗକୁ ଆଗକୁ ମାଡ଼ି ଚାଲିଥାଏ– ହଠାତ୍ ଗୋଟାଏ ମୁର୍ଦ୍ଦାର ମୋ' ଗୋଡ଼ଟାକୁ ଟାଣି ଧରିଲା । (ନିଜ ଗୋଡ଼କୁ ଅନେଇଲେ– ଦେଖିଲେ ମାଗୁ ଭୟରେ ତାଙ୍କ ଗୋଡ଼ଟାକୁ ଧରି ପକେଇଛି) କିରେ ! କ'ଣ ହେଲା କିରେ ?

ମାଗୁ : ଭାରି ଡର ମାଡୁଚି ସାଆନ୍ତେ ! ତେମେ ଯିମିତି କହୁଚ...

ମନ (ହସି) କାଓ୍ୱାର୍ଡ଼ଟା– ଆରେ । ଇଏ ଖାଲି ଶୁଣି ଶୁଣି ଛାନିଆଁ– ଆଖିରେ ଦେଖିଲେ ଯା ହାର୍ଟ ଫେଲ୍ କରିଯିବ ।

(ପୁଣି ପେପର୍ ପଢ଼ିବାରେ ମନ ଦେଇଚନ୍ତି)

ମାଗୁ : ସାଆନ୍ତେ । ଆଉ କ'ଣ କିଛି ଗପନାହିଁ ? ମିଲିଟେରୀରେ ଖାଲି ଏଇ କଥା ।

ମନ : ଆଉ କ'ଣ ଶୁଆଶାରୀ କଥା ? ହଁ... ଥରେ ଆମେ ଆସାମ ଯାଇଥିଲୁ ଫ୍ଲଡ଼୍‌ବେଳେ ।

ମାଗୁ ଫଲଡ ?

ମନ : ହଁ ନଈ ବଢ଼ି ଆସିଥାଏ । ଗାଆଁ ଗଣ୍ଡା ବିଲ, ଚାରିଆଡ଼େ ଖାଲି ପାଣି ଆଉ ପାଣି । ଆମକୁ ହେଲିକେପ୍‌ଟର୍‌ରେ ଓହ୍ଲେଇ ଦିଆଗଲା– କୁହାଗଲା– ଲୋକଙ୍କୁ ଉଦ୍ଧାର କର । ହଠାତ୍ ମୁଁ ଦେଖିଲି ଚାଳଘରଟାଏ ଭାସିଯାଉଛି– ତା ଉପରେ ୫/୭ ବର୍ଷର ପିଲାଟାଏ ବସିଛି– ତା' ପାଖରେ ଏକ ବିରାଟ ସାପ, ଫଣା ଟେକି ଏମିତି ଚାହିଁଚି ।

ମାଗୁ : ପିଲା ଆଉ ସାପ ଏକା ସାଙ୍ଗରେ ?

ମନ : ହଁ । ପାଖାପାଖି– ମୁଁ ସାଙ୍ଗେ ସାଙ୍ଗେ ପାଣିକି ଡମ୍ପ୍ କଲି । ଗୋଟିଏ ହାତରେ ପିଲାଟାକୁ ଧରିପକେଇ, ଆଉ ଗୋଟିଏ ହାତରେ ସାପଟାକୁ ଧରି, ଦେଲି ଛାଟି ଯେ–

ମନ : (ଭୟରେ) ଇଲୋ... ବୋଉଲୋ...

ମାଗୁ : ହାଃ...ହାଃ...ହାଃ...କିରେ, ତୋ' ଉପରେ ସାପଟା ପଡ଼ିଗଲା କିରେ ?

ମନ : ନାଇଁ ଯେ ସାଆନ୍ତେ... ମିଲିଟେରୀରେ ଖାଲି ଏଇ କଥା ଗୁଡ଼ା– ଆଉ କିଛି ନାହିଁ– ମୋତେ ଭାରି ଡର ମାଡୁଛି...

(ପ୍ରଶାନ୍ତ ପ୍ରବେଶ କରିଛି– ହାତରେ ଦି'ଚାରିଟା ବହି ଓ ଗୋଟାଏ ନୋଟବୁକ୍ – ଡ୍ରଇଂ ରୁମ୍‌ରେ ପଢ଼ିବା ଉଦ୍ଦେଶ୍ୟରେ ଆସିଛି)

ପ୍ରଶାନ୍ତ : (ମାଗୁକୁ) ହଇରେ ପରିବା ପାଇଁ ପରା ଯିବୁ ? ଏଠି ବସି ଗପ ଶୁଣୁଚୁ କ'ଣ ? ଯା– ବ୍ୟାଗ ପଇସା ଦେଈଙ୍କଠୁ ନେଇ, ଶିଘ୍ର ଯା ।

(ମାଗୁ ଘର ଭିତରକୁ ଯାଇଚି)

ମନ : ପ୍ରଶାନ୍ତ ! ତୁ ପେପେର୍ ଦେଖ୍– ମୁଁ ଟିକିଏ ବାହାରୁ ବୁଲି ଆସୁଚି ।

ପ୍ରଶାନ୍ତ ଡାକ୍ତର ପରା କହିଥିଲେ ଟିକିଏ ରେଷ୍ଟ ନବାକୁ ।

ମନ : କେତେଦିନ ରେଷ୍ଟ ନେବି ? ଚାରି ପାଞ୍ଚଦିନ ହେଲାଣି ଗୋଟାଏ ଘରେ, ତୁ ବୁଝୁନୁ । ଆମେ ଆର୍ମି ଲୋକ । ବସି ରହିଲେ ଦେହ ବେଶୀ ଖରାପ ହବ । (ମାଗୁ ଆସିଛି ହାତରେ ପରିବା ପାଇଁ ବ୍ୟାଗ)

ପ୍ରଶାନ୍ତ : ଆରେ ! ବାପା କହୁଛନ୍ତି ବାହାରକୁ ଟିକିଏ ଯିବେ । ଯାଆ ତାଙ୍କ ସାଙ୍ଗରେ– ସିଆଡୁ ପରିବା ନେଇ ଆସିବୁ ।

ମନ : ତୁ ଯିବୁ ଯଦି ଚାଲ୍ । ମୋର କିନ୍ତୁ କାହାର ସାହାଯ୍ୟ ଦରକାର ନାହିଁ । ନୋ ହେଲ୍‌ପ୍ । (ଉଭୟେ ପ୍ରସ୍ଥାନ)

[ ପ୍ରଶାନ୍ତ ଦି'ଟା ବହିକୁ ଖୋଲି ସେଥିରୁ କ'ଣ ସବୁ ନୋଟ୍ କରିବାରେ ବ୍ୟସ୍ତ ରହିଛି ]

ପ୍ରଶାନ୍ତ : (କିଛି ସମୟ ପରେ) ସୀମା ! ସୀମା !

ସୀମା : (ଭିତରୁ) କ'ଣ ?

[ ପ୍ରଶାନ୍ତ ପୁଣି କାର୍ଯ୍ୟରେ ବ୍ୟସ୍ତ ରହିଛି– ଟିକିଏ ପରେ ସୀମା ଆସିଛି ]

ସୀମା : କାହିଁ ଡାକୁଥିଲ ?

ପ୍ରଶାନ୍ତ : ଆଉ ଟିକିଏ ଚା କରିବ ?

ସୀମା ନା, ମୁଁ ସେ ଚା ଫା କରି ପାରିବିନି ।

ପ୍ରଶାନ୍ତ : କାହିଁ, କ'ଣ ହେଲା କି ?

ସୀମା ମୁଁ ମଣିଷ ନା ମେସିନ୍ ? ସକାଳୁ କାମ ଲାଗିଛି ଯେ ଏ ଯାଏଁ ନିଃଶ୍ୱାସ ମାରିବାକୁ ଫୁରୁସତ୍ ନାହିଁ ।

ପ୍ରଶାନ୍ତ ମାଗୁ କ'ଣ କିଛି କରୁନି ?

ସୀମା ତମେ ତ କହିଚ, ଦାପାଙ୍କ କାମ ମାଗୁ କିଛି କରିବନି । ସବୁ ମୁଁ କରିବି ।

ପ୍ରଶାନ୍ତ ହଁ, ତମେ; ବୋହୂ । ତମେ ନ କଲେ ବାପା ଭାବିବେ ସବୁ କାମ ଚାକର ହାତରେ ହଉଚି ।

ବୋହୂ ଭାବରେ ତମ କର୍ତ୍ତବ୍ୟରେ ତମେ ବାପାଙ୍କର ଅବହେଳା କରିବା ମୁଁ ଆଦୌ ଚାହେଁନା– ଅନ୍ତତଃ ଏ ଅପବାଦର କଳଙ୍କ ତମ ଠି ନ ଲାଗୁ ହେଲା ।

ସୀମା : ବାପା ଭାବନ୍ତୁ, ନ' ଭାବନ୍ତୁ ତମେ କିନ୍ତୁ ବେଶୀ ଭାବୁଚ । ମୁଁ ଏ ଘରର ଚାକରାଣୀ ନା ବୋହୂ ? ସମସ୍ତେ ମୋ' ଉପରେ ଖିଚିଖିଚି ହେବେ– ଭୋଅରୁ ରାତିଅଧ ଯାଏ ମୁଁ ଗଧ ଭଳି ଖଟୁଥିବି । ତମକୁ କ'ଣ ଏଇଟା ଭଲ ଦେଖାଯାଉଚି ।

ସ୍ନେହ ମମତା ଏ ଘରୁ ଉଭେଇ ଗଲାଣି– ଏ ଘର କ'ଣ ଘର ପରି ଅଛି ।

ପ୍ରଶାନ୍ତ : ଅବଶ୍ୟ ଜଞ୍ଜାଳ ଭିତରେ ରହି ମୁଁ ତୁମକୁ କୋଉଥିରେ ସାହାଯ୍ୟ କରିପାରୁନି ।

ଯାହା ଦେଖାଗଲାଣି ମୋ ରିସର୍ଚ୍ଚପେପର ସମିଟ୍ କରିବାରେ ଆହୁରି ଡେରି ହେବ... ହଁ।

ସୀମା : ଏମିତି ଭାଙ୍ଗି ପଡ଼ିଲେ କେମିତି ହବ । ମୁଁ ତୁମ ପାଖେ ପାଖେ ଅଛି । ତମ ପେପର୍‌ର ୭୫% କପି ମୁଁ କରି ସାରିଲିଣି– ମୁଁ ଦେଖିବି ତମେ ଠିକ୍ ସମୟରେ ପେପର୍ ଦାଖଲ କରିବ ।

ପ୍ରଶାନ୍ତ : ହୁଁ..... ଏମିତି ଗୋଟାଏ ସମୟ ପଡ଼ିଛି ଯେ ଅଫିସରେ କାମ ବଢ଼ିବା ସଙ୍ଗେ ସଙ୍ଗେ, ଥୋଡ଼ାଏ ଲୋକ ଅଛନ୍ତି– ଏମାନଙ୍କର ମଣିଷ ପଣିଆକୁ ଥରେ ଚିନ୍ତା କଲ ?

କ'ଣ ପାଆନ୍ତି ଏମାନେ ନା ମଣିଷକୁ ଭଲ ପାଆନ୍ତି, ନା ନିଜ ଜୀବନକୁ ଥରେ ବିଶ୍ଳେଷଣ କରନ୍ତି, ଆଉ ଆଗେଇ ଯିବାକୁ କାହା ସହ କାନ୍ଧ ବି ମିଶାନ୍ତି–

ହାଏରେ, ଅଦ୍ଭୁତ ଏଇ ମଣିଷର ମନ– କଙ୍କଡ଼ା ପରି ଗୋଡ଼ ଟାଣି ଧରିବାରେ କି ଆନନ୍ଦ ପାଆନ୍ତି ଏମାନେ--

ଯେତେ ଖୋଜିଲେ ବି ଯାର ଉତ୍ତର ପାଉନି ସୀମା ! ନା... ପାରିବ ତମେ ? ଦେଇ ପାରିବ ଯାର ଉତ୍ତର ?

ସୀମା : (ହସି) ଏମିତି ଏକ ଟପିକ୍‌କୁ ନେଇ କେବେ କ'ଣ କେହି ରିସର୍ଚ୍ଚ କରିନାହାନ୍ତି ?

ପ୍ରଶାନ୍ତ : ତୁମକୁ ଏ ଦାୟିତ୍ୱ ଦଉଛି, ଚେଷ୍ଟା କରି କହିବ ତ ?

ସୀମା : ନା–ନା–ବାବା ମୁଁ ପାରିବିନି ତମ ସହ ଜିଦ୍ ମାରି ମୁଁ ହାରିଯିବି ।

ପ୍ରଶାନ୍ତ : ପାରିବନି– ହାରିଯିବ ।

ସୀମା : ଛାଡ଼ ମୋ ହାତ, ସେଣେ କ୍ଷୀର ଉତୁରି ପଡ଼ିବ ଯେ...

ପ୍ରଶାନ୍ତ : ଆରେ କ୍ଷୀର ଉତୁରିବା କଥା ଉତୁରିବ । ଶୁଣ... ବାପା ସକାଳେ ସଂଜେ କ୍ଷୀର ପିଉଛନ୍ତି ତ ?

ସୀମା		ବାପାଙ୍କ ଦେହ ପୂରା ଭଲ ହେଇଗଲାଣି ଏଠି ଖାଲି'ତ ପାଣି କ୍ଷୀର ଗାଁରେ ଅନ୍ତତଃ ଭଲ କ୍ଷୀର ଟିକିଏ ଖାଆନ୍ତେ ।

ପ୍ରଶାନ୍ତ		କ'ଣ କହିଲ ?

ସୀମା	:	ବାପାଙ୍କର କ'ଣ ଏମିତି ହେଇଚି ଯେ ସାମାନ୍ୟ ଜ୍ୱର ଆଉ କାଶ ।

ପ୍ରଶାନ୍ତ		କ'ଣ କହିଲ, ସାମାନ୍ୟ ଟିକିଏ ଜ୍ୱର ଆଉ କାଶ ? ତମେ କ'ଣ ଜାଣିନ, ଏ ବୟସରେ ଗୋଟାଏ ଲୋକ ଏକା ଏକା ଗାଆଁରେ ପଡ଼ି ରହିଲେ, ତା'ର ମାନସିକ ଅବସ୍ଥା କେମିତି ବଦଳିଯାଏ ?

ତମେ କ'ଣ ଜାଣିନ, ଆମେ ଦି'ଜଣ କେବଳ ତାଙ୍କର ସାହା ଭରସା, ସୁଖ ଶାନ୍ତି ସବୁ କିଛି–

ସୀମା		(କାନ୍ଦି) କିଏ ମନା କଲା । କିନ୍ତୁ... ମୋର ମନେ ହଉଚି ତମେ ଯେମିତି ଦିନକୁ ଦିନ ମୋ'ଠୁ ଦୂରେଇ ଯାଉଚ–

ପ୍ରଶାନ୍ତ	:	(ପରିସ୍ଥିତିକୁ ସୁଧାରିବାକୁ ଚେଷ୍ଟା କରି) ଆରେ ଧେତ୍ ଗୋଟାଏ ଘର ଭିତରେ ଏକା ସାଙ୍ଗରେ ଖାଇପିଇ ଦିନର ଅଧିକାଂଶ ସମୟ ତ ମୁଁ ତୁମ ପାଖେ ପାଖେ ଅଛି ।

ଦୂରେଇ ଗଲି କେତେବେଳେ ? ଆଛା...ଆଛା...ଆଛା... ଠିକ୍ ଅଛି, ଦୂରେଇ ଗଲିତ–

ଦେଖ ତେବେ– ଏଇ ଦେଖ– ପାଖେଇ ଗଲି– ଆଉ ଟିକିଏ ପାଖେଇ ଗଲି, ଏତିକି ପାଖ ଚଳିବ ତ ? (ସୀମାଙ୍କର ହସ)... ସୀମା...

(ଦୁହିଁଙ୍କ ହସ ଭିତରେ ଅନ୍ଧାର)



# ପଞ୍ଚମ ଦୃଶ୍ୟ

*(ଡ୍ରଇଂ ରୁମ୍‌-ସମୟ ବିଳମ୍ବିତ ରାତି-ଆଲୋକ ଆସିଲା ବେଳକୁ ମାଗୁ ଚଦର ଘୋଡ଼ି ହୋଇ ବସି ଘୁମଉଚି- କିଛି ସମୟ ପରେ ସୀମା ମଞ୍ଚର ଭିତର ପଟୁ ବାହାରକୁ ଯାଇ ପୁଣି ଫେରିବା ବେଳେ ମାଗୁର ନିଦ ଭାଙ୍ଗି ଯାଇଚି)*

ମାଗୁ : ବାବୁ ଆଇଲେ କି ଦେଈ ?

ସୀମା : ନା !

(ପୁଣି ଭିତରକୁ ଯାଇ କିଛି ସମୟ ପରେ ମଞ୍ଚକୁ ଆସିଛନ୍ତି- ମାଗୁ ଶୋଇନି)

ମାଗୁ କେତୁଟା ବାଜିଲା ଦେଈ ?

ସୀମା (ବସିପଡ଼ି) ସାଢ଼େ ଏଗାର ବାଜିଲାଣି ।

ମାଗୁ : ଏଁ ! ରାତି ଅଧ ହେଲାଣି ତା'ହେଲେ । ବାବୁ କ'ଣ କିଛି କହିକି ଯାଇ ନାହାନ୍ତି ?

ସୀମା : ନା ।

ମାଗୁ : ଅଫିସ୍‌କି ଫୁନ୍ କଲନି ?

ସୀମା : କରିଥିଲି । କିଏ ଜଣେ ଧଇଲା, କହିଲା- ବାବୁ ପାଞ୍ଚଟା ବେଳୁ ଅଫିସ୍ ଛାଡ଼ିଲେଣି ବୋଲି-

ମାଗୁ : ତମେ ଯାଉନ ଦେଈ ! ଶୋଇବ । ମୁଁ ଏଇଠି ବଇଚି । ବାବୁ ଆଇଲେ ମୁଁ ସାଙ୍ଗେ ସାଙ୍ଗେ ଡାକି ଦେବି ।

(ସୀମା କିଛି ନ କହି ଗୋଟାଏ ବହି, ର୍‍ୟାକରୁ ଆଣି ପଢ଼ିବାକୁ ଚେଷ୍ଟା କରି ବନ୍ଦ କରି ଦେଇଛନ୍ତି । ମାଗୁ ଘୁମେଇବା ଦେଖିଛନ୍ତି ଓ ଭିତରକୁ ଯାଇଛନ୍ତି ।)

ପ୍ରଶାନ୍ତ : (ଭିତରୁ) ମାଗୁ ! ମାଗୁ !

ମାଗୁ : ଯାଉଚି ବା଼ବୁ ।

(ପ୍ରଶାନ୍ତ ପ୍ରବେଶ କରିଛନ୍ତି– ପଛେ ପଛେ ମାଗୁ)

ପ୍ରଶାନ୍ତ ଦେଈ ଶୋଇ ପଡ଼ିଲେଣି କିରେ ?

ମାଗୁ : ଶୋଇବେ ? ଏଇଠି ପରା ଏଇଲେ ବସି ବସି ଗଲେ । ଦେଈ ! ଦେଈ !
(ମାଗୁ ଭିତରକୁ ଯାଇଚି– ସୀମା ପ୍ରବେଶ କରିଛନ୍ତି)

ପ୍ରଶାନ୍ତ ଟିକିଏ ଡେରି ହେଇଗଲା ରେଫରେନ୍ସ ପାଇଁ ଲାଇବ୍ରେରୀରେ ବସି ନୋଟ୍ କରୁଥିଲି । ଆଚ୍ଛା, ବାପା ଶୋଇ ପଡ଼ିଲେଣି ।

ସୀମା (ପ୍ରଶାନ୍ତକୁ ନ ଚାହିଁ– ରାଗରେ) ହଁ ।

ପ୍ରଶାନ୍ତ : ତମେ ଖାଇଲଣି ?

ସୀମା : ହଁ ।

ପ୍ରଶାନ୍ତ ହଉ ଭଲ କରିଚ । (ଭିତରକୁ ଯାଇଛନ୍ତି)

(ସୀମା କିନ୍ତୁ ସେଇଠି ଠିଆ ହେଇ, ଆସ୍ତେ ଆସ୍ତେ କାନ୍ଦିଛନ୍ତି । ଧିରେ ଧିରେ କାନ୍ଦର ଲହରୀ ବଢ଼ିଛି– ପ୍ରଶାନ୍ତ ଟାୱେଲରେ ପୋଛି ହେଇ ଟାୱେଲଧରି ଆସିଛନ୍ତି)

ପ୍ରଶାନ୍ତ : (ଆଶ୍ଚର୍ଯ୍ୟ ହୋଇ) କ'ଣ ହେଲା ? ତମେ ଏମିତି କାନ୍ଦୁଚ କାହିଁକି ? ଆରେ ବାବା, ଡେରି ତ ହୋଇଗଲା । ମୋର କ'ଣ ଅନ୍ୟ କୋଉ ଦିନ ଡେରି ହୁଏ ?

ସୀମା : (ସେଇ କାନ୍ଦ କାନ୍ଦ ସ୍ୱରରେ) ଅନ୍ୟ କୋଉଦିନ ଆଉ ଆଜି ।

ପ୍ରଶାନ୍ତ : ଆଜି ! ଆଜି କ'ଣ ହେଲା ?

ସୀମା ତମେ କାଇଁ ମନେରଖିବ ଆଜି କ'ଣ ! ଆଜି ବୋଉ ତାରିଖ– ଏଇ ତାରିଖରେ କ'ଣ ହୋଇଥିଲା ?

ପ୍ରଶାନ୍ତ : ଆଜି ତ ଜାନୁଆରୀ ଅଠେଇଶ୍ । କ'ଣ ହୋଇଥିଲା ।

(ସୀମା ଖୁବ୍ ଜୋରରେ କାନ୍ଦିଛନ୍ତି– ପ୍ରଶାନ୍ତ ମନେ ପକେଇବାକୁ ଚେଷ୍ଟା କରିଛନ୍ତି– ଓ ହଠାତ୍ ମନେ ପଡ଼ିଯିବାରୁ)

ଆଇ ଆମ୍ ସରି ସୀମା ! ମୋର ମୋଟେ ମନେ ନାହିଁ ।

ସୀମା : ମନେ କାହିଁକି ରହିବ ? ବାହାଘରର ବର୍ଷେ ନ ପୂରୁଣୁ ଆଜି ତମେ ବାହାଘର ତାରିଖ ଭୁଲିଗଲ । ଆଉ କେଇଦିନପରେ ମୋତେ ବି ଭୁଲିଯିବ ।

ପ୍ରଶାନ୍ତ ଦେଖ, ମୁଁ ଏ ଝାମେଲା ଭିତରେ ବିଲ୍‌କୁଲ୍ ଭୁଲି ଯାଇଚି । ଆଜି ସକାଳେ ତ ତମେ ମୋତେ ମନେପକେଇ ଦେଇଥାନ୍ତ ?

ସୀମା : କାହିଁକି ମନେପକେଇ ଦେଇଥାନ୍ତି । ମୁଁ ଖାଲି ଦେଖୁଥିଲି ତମର ମୋ କଥା ମନେଅଛି ନା ନାହିଁ । ପ୍ରଥମ ବିବାହ ବାର୍ଷିକୀ ଉତ୍ସବ– ଆମେ ସେଲିବ୍ରେଟ୍ ସେଲିବ୍ରେଟ୍ କଲେ ନାହିଁ ଯାଠୁ ଭୁଲ ବେଶୀ ବ'ଣ ଆଶା କରାଯାଏ ?

ପ୍ରଶାନ୍ତ : ହଉ ହେଲା, ଏଥର ନ ହେଲା ନାହିଁ । ମ୍ୟାରେଜ୍ ଆନିଭାରସାରୀ ଆଉ କୋଉଦିନ ସେଲିବ୍ରେଟ୍ କରିବା, ବାହାରେ ଆକାଶ ଭର୍ତ୍ତି ତାରା ଆଉ ସୁନ୍ଦର ଜ୍ୟୋସ୍ନା– ଆସ ଗାର୍ଡ଼େନରୁ ବୁଲି ଆସିବା– ତମ ମନ ଭୁଲିଯିବ ।

ସୀମା : ଏତେ ରାତିରେ ପୁଣି ବାହାରେ... ଜାଣିଛ ! ତମର ଆସିବା ଡେରି ହେବାରୁ ମୁଁ କ'ଣ କରୁଥିଲି ?

ପ୍ରଶାନ୍ତ : କ'ଣ କରୁଥିଲ ?

ସୀମା : ଚିନାମାଟିର ତିଆରି ତାଜମହଲର ସେଇ ମୂର୍ତ୍ତିଟା... ଯୋଉଟା ଆଗ୍ରାରୁ ଫେରିବା ବାଟରେ ତମେ କିଣି ଆଣିଥିଲ ମୋ ପାଇଁ ।

ପ୍ରଶାନ୍ତ ହଁ, ମତେ ବି ସେଇଟା ଖୁବ୍ ଭଲଲାଗେ ।

ସୀମା ସେଇଟାକୁ ଖାଲି ଚାହିଁ ଚାହିଁ ମୁଁ ସଂଧ୍ୟାରୁ ଏପର୍ଯ୍ୟନ୍ତ ତମକୁ ମନେ ପକେଇ ପକେଇ... (ଲାଜେଇ ଯାଇ)

ପ୍ରଶାନ୍ତ ତମେ ତା ହେଲେ କିଛି ଖାଇନ ?

ସୀମା କେମିତି ଖାଇଥାନ୍ତି ?

ପ୍ରଶାନ୍ତ ହଉ ଚାଲ, ଆଜି ମୁଁ ନିଜ ହାତରେ ତମକୁ ଖୁଆଇ ଦେବି ।

ସୀମା ଧେତ୍ !

ପ୍ରଶାନ୍ତ : କାଇଁ, ଲାଜ ଲାଗୁଚି କି ?

ସୀମା (କଥାର ମୋଡ଼ ବଦଳେଇ) ହଁ, ଗୋଟାଏ କଥା ତମକୁ କହିବାକୁ ଭୁଲିଯାଇଥିଲି । ରୀମା ଚିଠି ଦେଇଚି ।

ପ୍ରଶାନ୍ତ ରୀମା, କ'ଣ ଲେଖିଚି ?

ସୀମା ସିଏ ଆଉ ତା' ବର ଆସିବେ ହାଇଦ୍ରାବାଦରୁ । ଗାଁକୁ ଗଲାବେଳେ ଏଇଠି ଚାରି ପାଞ୍ଚ ଦିନ ରହିଯିବେ ।

ପ୍ରଶାନ୍ତ ଏଠି ?

ସୀମା ହଁ, ତା' ବର ତ ପ୍ରଥମେ ଆସୁଚି । ଏଇ ବାଟେ ଯେତେବେଳେ ଯିବେ, ଏଠି ଚାରି ପାଞ୍ଚଦିନ ରହି ଚାଲିଯିବେ ।

ପ୍ରଶାନ୍ତ ହଁ, ଏବେ ତ ଦି'ମାସ ତଳେ ବାହାଘର ବେଳେ ସମସ୍ତେ ଏକାଠି ହୋଇଥିଲେ । ଏଠି ନ ରହିଲେ ଚଳିବ ।

ସୀମା ମାନେ ?

ପ୍ରଶାନ୍ତ ମାନେ, କଥା କ'ଣ କି ? ବାପା ତ ଏଇଠି ଅଛନ୍ତି । ସେମାନେ ଆସିଲେ ଏଠି ରହିବାକୁ ଅସୁବିଧା ହେବ । ବରଂ, ତମେ ନ ଆସିବାକୁ ଚିଠିଟିଏ ଲେଖିଦେଲେ ଭଲ ହେବ ? ଲେଖି ଦିଅ....

ସୀମା ଯେ ମୋ ଶଶୁରଙ୍କ ଦେହ ଖରାପ- ତାଙ୍କର ଏଠି ଚିକିତ୍ସା ଚାଲିଛି- ଆମେ ଦୁହେଁ ଅନବରତ ବ୍ୟସ୍ତ- ଯାଙ୍କର ରିସର୍ଚ୍ଚ କାମ ସରିନି- ତୁ ବରଂ ନ ଆସିବା ଭଲ- ଇତ୍ୟାଦି ଇତ୍ୟାଦି ।

ପ୍ରଶାନ୍ତ (ରାଗିଯାଇ) ଷ୍ଟୁପିଡ୍ ।

ସୀମା ହଁ, ମୁଁ ଷ୍ଟୁପିଡ୍ ତମେ ଏକା ଚାଲାକ୍ । ଏଠି ମୁଁ ଗଧପରି ଖଟୁଚି । ମୋର କିଏ ଆସିଲା ବେଳକୁ ତମ ଉପରେ ବୋଝ ନଦି ହେଇ ପଡୁଛି କାଇଁକି ? ତମେ ମତେ ବୁଝିବାକୁ ଚେଷ୍ଟା କରୁନ କାଇଁକି ? (କାନ୍ଦ)

ପ୍ରଶାନ୍ତ ଆଚ୍ଛା ହେଲା- କୋଉ ଶାସ୍ତ୍ରରେ ଅଛି ଭଲା କହିଲ ? ଏଇ ଆମର ବିବାହ ବାର୍ଷିକୀରେ ତମେ ଏମିତି କ୍ରନ୍ଦନ ଉତ୍ସବ ପାଳନ କରିବ... କହିବଟି ?



# ଷଷ୍ଠ ଦୃଶ୍ୟ

*(ସକାଳ ଆଠଟା ନଅଟା ପାଖାପାଖି – ଆଲୋକ ଆସିଲା ବେଳକୁ ଦେଖାଗଲା ମାଗୁ ଆଗପଛ/ଏପଟ ସେପଟ ହୋଇ ମଞ୍ଚକୁ ପ୍ରବେଶ କରୁଛି– ବହି ର୍ୟାକ୍ ପାଖକୁ ଆସି ସତର୍କରେ, ର୍ୟାକ୍ ତଳୁ ଗୋଟାଏ ପୁଡ଼ିଆ ବାହାର କରିବାକୁ ଚେଷ୍ଟା କରିଛି ।*

ସୀମା (ପ୍ରବେଶ) କ'ଣ କିରେ ?

ମାଗୁ : ନାଇଁ, କିଛି ନାଇଁ ?

ସୀମା କ'ଣ ସେଇଟା ଧରିଚୁ ?

ମାଗୁ (ଲୁଚେଇବାକୁ ଚେଷ୍ଟାକରି) ଏଇଟା... ଏଇଟା କିଛି ନୁହଁ ଅଳିଆଗୁଡ଼ା

ସୀମା ଅଳିଆଗୁଡ଼ା ? ଅଳିଆ ଏତେବେଳେଯାକେ ର୍ୟାକ୍ ତଳେ ରଖିଥିଲୁ ? ଦେଖା, କ'ଣ ନେଉଥିଲୁ, ଦେଖା !

(ଭୟରେ ଏପଟ ସେପଟ ହୋଇଛନ୍ତି– ମାଗୁ କିନ୍ତୁ ସେ ପୁଡ଼ିଆକୁ ଦେଖେଇବାକୁ ପ୍ରସ୍ତୁତ ନୁହଁ)

ଚୋରି କରୁଥିଲୁ ? ଏଠି ଆସି ମତେ ବଦନାମ କରିବୁ ?

ମାଗୁ ଚୋରି କାହିଁକି କରିବି ।

ସୀମା : ଆଉ ଦେଖଉନୁ କାହିଁକି ?

ମାଗୁ : ନାଇଁ, ମୁଁ ଦେଖେଇବିନି ।

ସୀମା : ଦେଖେଇବୁନି ? ତୋର ଏଡ଼େ ସାହାସ ?

ମାଗୁ ନାଇଁ, ମୁଁ ଦେଖେଇବିନି ।

ସୀମା ବଦମାସ । (ଚାପୁଡ଼ା) କାହିଁକି ଦେଖେଇବିନି ।

ମାଗୁ (କାନ୍ଦି) ମତେ ତେମେ ମାଇଲ ଦେଇ । ମତେ ଚୋର ବୋଲି କହିଲ । ଏତେଦିନ ଯାଏଁ ତମ ଗାଆଁରେ ଥେଲି । ଏଇଠି ଆସି ବରଷେ ହେଲା ରହିଲିଣି ।

ଦେଖିଥିଲ, କୋଉଦିନ କୁଟା ଖଣ୍ଡେ ଉଠେଇଚି- ନିଅ ଦେଖ, କ’ଣ ତମର ଚୋରି କରୁଥିଲି- ଦେଖ ।

ସୀମା (ପୁଡ଼ିଆଟା ଦେଖି) ଏଁ ଭାଙ୍ଗି ଦେଲୁ...

ମୋ ସୁନ୍ଦର ତାଜମହଲକୁ ତୁ ଭାଙ୍ଗି ଦେଲୁ ।

ବଦ୍‌ମାସ୍, ମୂର୍ଖ । ତୁ କୋଉଠୁ ବୁଝିବୁ ଏଇଟା କ’ଣ ? ଭାବିଥିଲୁ ଲୁଚେଇ ନେଇ ଏଇଟା ବାହାରେ ଫିଙ୍ଗିଦବୁ ଯା, ଯା, ବାହାରି ଯାଆ ଏଘରୁ- ଆଜି- ଏଇ ସାଙ୍ଗେ ସାଙ୍ଗେ ଯା- ଯା । ବାହାରି ଯାଆ...

ମନ କ’ଣ ହେଲା ବୋହୂ ! କିଏ ବାହାରି ଯିବ ? (ମାଗୁକୁ) କିରେ ! ଏମିତି ଚୂପ୍ ଚାପ୍ ଠିଆ ହେଇଚୁ କ’ଣ ?

ସୀମା ମୋ ତାଜମହଲ ମୂର୍ତ୍ତିଟାକୁ ଭାଙ୍ଗିଦେଲା ବାପା ।

ମନ ହାଃ... ହାଃ... ହାଃ... ଆରେ ! ସେଇଟାକୁ ସେ ଭାଙ୍ଗିନି- ତା’ ଉପରେ ବିରକ୍ତ କାହିଁକି ହଉଚୁ ? ସେଇଟା ମୋ’ ହାତ ବାଜି ତଳେ ପଡ଼ିଗଲା ।

ସୀମା ଆପଣ ଭାଙ୍ଗିଦେଲେ !

ମନ ବଜାରକୁ ଯାଇଥିଲି, ସେମିତି ଗୋଟିଏ କିଣି ଆଣିବାକୁ, ତମର ଏ ଛକରେ ଏ ସବୁ ଜିନିଷ ମିଳୁନି । ଠିକ୍ ଅଛି । ଆଗ୍ରାରେ ମୋର ଜଣେ ଦୋସ୍ତ ଅଛି । ସେ ବି ଜଣେ ରିଟାୟାର୍ଡ଼ ମିଲିଟେରୀ ଅଫିସର । ବାଛି ବାଛି ଡିସେଣ୍ଟ୍ ଜିନିଷ ସବୁ କିଣେ । ତା’ ପାଖକୁ ଚିଠି ଲେଖିଦେବି- ଏକାଥରକେ

ଚାରି ପାଞ୍ଚଟା ପଠେଇ ଦବ ବୁଝିଲୁ ? ମୂର୍ତ୍ତିଟା ଭାଙ୍ଗିଗଲା ଯେ... ତା ପାଇଁ ଏତେ ଚିନ୍ତା ? (ଭିତରକୁ ଗଲେ)

ମାଗୁ ଦେଇ ! ଭାଙ୍ଗିତ ଗଲା । ଇମିତି ରାଗୁଚ କାଇଁକି ? ବୁଢ଼ାବାବୁ ତ କହିଲେ, ଦି' ଚାରିଟା ମଗେଇ ଦେବେ ।

ସୀମା ଚୁପ୍‌କର ! ଇଏ ଆସିଲା ପାଳି ଧରିବାକୁ । ମୂର୍ଖ– ଏଠି କେହି ମୋ' କଥାକୁ ସିରିଅସ୍‌ଲି ନଉ ନାହାନ୍ତି ।

(ପ୍ରଶାନ୍ତ ଆସିଛନ୍ତି– ହାତରେ କୌଣସି ଏକ ଜିନିଷ ଅଛି– ଏମାନଙ୍କୁ ଦେଖି)

ପ୍ରଶାନ୍ତ କ'ଣ ହେଲା ?

ସୀମା କିଛି ହେଇନି– ସବୁ ଠିକ୍ ଠିକ୍ ଚାଲିଛି ।

ମାଗୁ ବୁଢ଼ାବାବୁଙ୍କର ହାତ ବାଜି ଦେଇଙ୍କର ସେଇଟା ଭାଙ୍ଗିଗଲା ଯେ...

ପ୍ରଶାନ୍ତ କୋଉଟା ? ଓ ଏଇଟା । ଭାଙ୍ଗି ଗଲା ତ ଗଲା । ଏତେ ପାଟି ହଉଚି କାହିଁକି ?

ସୀମା କ'ଣ କହିଲ, ଭାଙ୍ଗିଗଲା'ତ ଗଲା । ହଁ କହିବନି କାହିଁକି ? ଆଉ କିଏ ଭାଙ୍ଗିଥିଲେ ତମେ କ'ଣ କଥାଟାକୁ ଏମିତି ଉଡ଼େଇ ଦେଇଥାନ୍ତ ?

ପ୍ରଶାନ୍ତ ଭାଙ୍ଗିଯିବା ଜିନିଷଟା, ଭାଙ୍ଗିଯିବ । କେତେଦିନ ସେମିତି ଅଭଙ୍ଗା ଥିବ– ଏଁ !

ସୀମା କ'ଣ କହିଲ ଭାଙ୍ଗିଯିବ ? ତମେ କ'ଣ ଜାଣିନା, ଏ ମୂର୍ତ୍ତିଟାକୁ ମୁଁ କେମିତି ସାଇତି ରଖିଥିଲି ? ମୋ' ମନ ଭିତରେ ବି ଏମିତି ଏକ ମୂର୍ତ୍ତି ସାଇତା ହେଇ ରହିଛି । ତମେ କ'ଣ ଚାହୁଁଚ ସେଇଟା ବି ଭାଙ୍ଗିଯାଉ ?

ପ୍ରଶାନ୍ତ ଦେଖ, ବାପାଙ୍କ ହାତ ବାଜି ଭାଙ୍ଗି ଯାଇଚି– ପାଟି ତୁଣ୍ଡ କଲେ ସେ କ'ଣ ଭାବିବେ ?

ସୀମା ଭାବନ୍ତୁ ଯାହା ଭାବିବେ । ସେ କ'ଣ ପିଲା ହେଇଛନ୍ତି ? ତାଙ୍କର ଦାୟୀତ୍ୱ ଜ୍ଞାନ କିଛି ନାହିଁ । (ମନମୋହନଙ୍କ ପ୍ରବେଶ ଓ ପ୍ରସ୍ଥାନ)

ପ୍ରଶାନ୍ତ ତମ ମୁଣ୍ଡ ଠିକ୍ ଅଛି ତ ?

ସୀମା : ହଁ । ଠିକ୍ ଅଛି । ମୋ ମୁଣ୍ଡ ଠିକ୍ ଅଛି ବୋଲିତ ମୁଁ ଏଠି ଚୁପ୍‌ଚାପ୍ ନୀରବରେ ସବୁ ସହିଯାଉଛି । ଅନ୍ୟ କିଏ ହୋଇଥିଲେ–

ପ୍ରଶାନ୍ତ : ଅନ୍ୟ କିଏ ହୋଇଥିଲେ ମତେ ଏ ଘରୁ ବାହାର କରି ଦେଇଥାନ୍ତା ? ଫାଶୀ ଖୁଣ୍ଟରେ ଝୁଲେଇ ଦେଇଥାନ୍ତା ?

ସାମାନ୍ୟ ଗୋଟାଏ ମାଟିର ମୂର୍ତ୍ତି ପାଇଁ ତମେ ମୋରି ସାମ୍ନାରେ ମୋ' ବାପାଙ୍କୁ ଅପମାନିତ କଲ ? ତମେ କୋଉଠୁ ବୁଝିବ, ମୋ ପାଇଁ ସେ କ'ଣ କରିଛନ୍ତି ବର୍ଷ ବର୍ଷ ଧରି । ସବୁ ସମୟରେ ମୃତ୍ୟୁର ସାମ୍ନା ସାମ୍ନି ହୋଇ ସେ ମତେ ମଣିଷ କରିଥିଲେ । ତମକୁ ବୋହୂ କରି ଆଣିଥିଲେ– କ'ଣ ଏଇଥି ପାଇଁ ? କ'ଣ ହେଲା ସେ, ମୂର୍ତ୍ତିଟା ଭାଙ୍ଗି ଦେଲେ ବୋଲି ? ସେ ଅଲବତ୍ ଭାଙ୍ଗିବେ । ଏ ଘରଟା ତାଙ୍କର– ଏଠି ସବୁ ଜିନିଷ ଉପରେ ତାଙ୍କର ଅଧିକାର ଅଛି । (ପ୍ରସ୍ଥାନ)

(ସୀମା ଓ ମା:ଗୁ ଚାହିଁ ରହିବା ଭିତରେ ଆଲୋକ ଲିଭିଛି)

●

## ସପ୍ତମ ଦୃଶ୍ୟ

*(ସକାଳ, ମାଗୁ ଚା ଆଣି ପ୍ରଶାନ୍ତଙ୍କୁ ଦେଇଛି । ପ୍ରଶାନ୍ତ ଖବରକାଗଜ ଉପରେ ଆଖି ପକଉଛନ୍ତି ।)*

ପ୍ରଶାନ୍ତ    ମାଗୁ !

ମାଗୁ    ବାବୁ !

ପ୍ରଶାନ୍ତ    ଦେଈ କାଲି ଖାଇଥିଲେ ତ ?

ମାଗୁ    ନାଇଁ ବାବୁ...

ପ୍ରଶାନ୍ତ    ମାନେ ?

ମାଗୁ    ଦିନ ଭରି ଖାଲି ମୋ' ଉପରେ ଚିଡ଼ୁଥିଲେ । ଖାଇବାକୁ ଡାକିଲି ଯେ, ତୁଚ୍ଛାଟାକୁ ମୋ' ଉପରେ ଗାରୁ ଗାରୁ ହେଲେ । କହିଲେ କ'ଣ ନା, ଯା ତୁ ଖାଇଦେଇ ଶୋଇଯିବୁ, ମୋ ପେଟ ଭଲ ନାହିଁ । ମୁଁ ଆଉ ତାଙ୍କୁ ଜୋର କଲିନି ।

ପ୍ରଶାନ୍ତ :  ତୋ' ଦେଈ ନାହାନ୍ତି କିରେ ?

ମାଗୁ    ପାଖ ଘରୁ ଚୁନି ଦେଈ ଆସି ଡାକି ନେଇଛନ୍ତି । ତାଙ୍କର କ'ଣ ଆମ ଦେଈଙ୍କ ପାଖରେ କାମ ଅଛି । ଏଇ ଆସୁଥିବେ...

ପ୍ରଶାନ୍ତ :  ବାପାଙ୍କୁ ଚା' ଦେଲୁଣି ?

ମାଗୁ :  ହଁ, ଦେଇଆଇଚି । ସାଆନ୍ତେ ଖାଇ ସାରିବେଣି । ଯାଏଁ ଦେଖେଁ ।

ମନ    (ପ୍ରବେଶ) ଏ ମାଗୁ– ପ୍ଲେଟ୍ କପ୍ ଧୋଇ କିଚେନ୍ ରୁମ୍‌ରେ ଯାଇ ରଖ୍ ।... (ମାଗୁର ପ୍ରସ୍ଥାନ)

ପ୍ରଶାନ୍ତ ସୋଫାରୁ ଉଠିପଡ଼ିଛନ୍ତି- ମନମୋହନ ବସିବା ପରେ ପ୍ରଶାନ୍ତ ଖବରକାଗଜଟା ବାପାଙ୍କୁ ଦେଲାବେଳେ)

ମନ : ତୁ ଆଗ ଦେଖି ନେ । ମୁଁ ଲଞ୍ଚ୍ ପରେ ଦେଖିବି । ହଁ ପ୍ରଶାନ୍ତ, ତତେ ଗୋଟାଏ କଥା କହିବାର ଅଛି ?

ପ୍ରଶାନ୍ତ ବାପା । ଆପଣଙ୍କର କିଛି ଏଠି ଅସୁବିଧା ହେଉଚି କି ?

ମନ ଆରେ ନା...ନା...ନା...

ମୁଁ ମୋ ବୋହୂ ଉପରେ ବହୁତ ଖୁସି । ତା' ଛଡ଼ା ଏଇ ମାଗୁ- ସିଏତ ଚବିଶ ଘଣ୍ଟା ମୋ' ଫରମାଇସ୍‌କୁ ଅନେଇ ବସିଛି । ସେଥିରେ ମୋର ଅସୁବିଧା ହେଉଚି ? ହାଃ... ହା... ତେବେ କଥା କ'ଣ କି ତୁମେମାନେ ସବୁ ପିଲାଲୋକ । ସାଂସାରିକ ଜୀବନରେ ପ୍ରଥମ ପାଦ ଦେଇଚ । ପତି ପତ୍ନୀ ଭିତରେ ସାମୟିକ ରାଗ ଅଭିମାନ ଖୁଟ୍‌ଖାଟ୍ ଏମିତି ରୁହେ- ଏଇଥିପାଇଁ ଅଖିଆ ଅପିଆ ରହି ଅଶାନ୍ତି ସୃଷ୍ଟି କରିବା, ଆଦୌ ସମୀଚୀନ ନୁହେଁ ।

ପ୍ରଶାନ୍ତ ନାଇଁ ବାପା... ସେମିତି କିଛି ନୁହେଁ । କାଲି ଅଫିସ୍‌ରେ ମିଟିଂ ପରେ ଡିନର୍‌ରେ ଜୋର ଖାଇ ନେଇଥିଲି । ସୀମା ହୁଏତ ମତେ ଅପେକ୍ଷା କରି ମୋ' ଉପରେ ଅଭିମାନ କରି ଖାଇନାହାନ୍ତି ଆପଣ ବ୍ୟସ୍ତ....

ମନ : ଆରେ ମୁଁ ଜମା ବ୍ୟସ୍ତ ନୁହେଁ । ତମେମାନେ ବୁଝି ପାରିବ ନାହିଁ । ଅନୁଭୂତିର ମୂଲ୍ୟ ଅନେକ- (ସୀମାର ପ୍ରବେଶ) ସୀମା ତୋ' ଠାରୁ ବୟସରେ ଯଥେଷ୍ଟ କମ୍ । କଲେଜ୍ ଛାଡ଼ିଲା ତ- ବାପା ନ ଥିବାରୁ ମା' ତା'ର... ଏଇ ତ ମୋ ବୋହୂ ଆସିଲାଣି । ମୋ' ମା'ଟା ପରା । ପ୍ରଶାନ୍ତ ପିଲାବେଳୁ ସେୟା । ଯୋଉ କାମରେ ଲାଗିଥିବ ତ ଲାଗିଥିବ । ତା'ର କ'ଣ ମନେ ଥିଲା ତୁ ଅପେକ୍ଷା କରିଛୁ ତାକୁ, ପ୍ରଶାନ୍ତ, ଯାଅ, ଦୁହେଁ ମିଶି ଖାଅ । ତା'ପରେ ଯାଇ ମୋ ଖାଇବା ।

ସୀମା (କିଛି ନ କହି ମୁହଁ ବୁଲେଇ ଚାଲିଯାଇଛନ୍ତି)

ପ୍ରଶାନ୍ତ : ସୀମା ଯଦି ମୋ ବ୍ୟସ୍ତତା କଥା ବୁଝିବାକୁ ଟିକିଏ ଭାବନ୍ତେ ହୁଏତ ସେ...

ମନ ଷ୍ଟପ୍ ଇଟ୍ । ଟ୍ରାଇ ଟୁ ମେକ୍ ହର ଅଣ୍ଡରଷ୍ଟାଣ୍ଡ ଫାଷ୍ଟ । ମୁଁ ଜାଣେ ମୋ ବୋହୂ ଠିକ୍ ବୁଝିବ । ସେ କେବେ ଭୁଲ କରି ପାରେନା । ନୋ... ନେଭର୍ ।

ପ୍ରଶାନ୍ତ : ବାପା ।

ମନ (ନୀରବରେ ଚାହିଁଲେ)



# ଅଷ୍ଟମ ଦୃଶ୍ୟ

*(ମାଗୁ ଖୁବ୍ ବ୍ୟତିବ୍ୟସ୍ତ ହୋଇ ପ୍ରଶାନ୍ତବାବୁଙ୍କୁ ଅପେକ୍ଷା କରିଛି- ଏପଟ ସେପଟ ହୋଇ କ'ଣ ଯେ କରିବ- କିଛି ଭାବି ପାରୁନି- ସୀମା* ମୋବାଇଲ୍ ଟେଲିଫୋନ୍ ଧରି ନମ୍ବର ଡାଏଲ୍ କରୁଛନ୍ତି- ସମୟେ ସମୟେ ନିଜ ହାତ ଘଣ୍ଟାକୁ ଦେଖୁଛନ୍ତି ।)

ସୀମା ଆସି, ଏତେ ବେଳ ହେଲାଣି- ବାବୁଙ୍କ ଦେଖା ନାହିଁ-

(ମାଗୁକୁ) ବାବୁ ଗଲାବେଳେ ତୁ'ତ ଥିଲୁ ବହିପତ୍ର ବେଶି ନେଇଛନ୍ତି କି ?

ମାଗୁ (ଭାବିଛି) ହଁ ଦେଈ ! ଗଲାବେଳେ ଟେବୁଲ ଉପରେ ବହିଗୁଡ଼ାକ ଘଣ୍ଟାଘଣ୍ଟି କରୁଥିଲେ । ନେଲେ ନା କ'ଣ- ?

ସୀମା : ତୋର କିଛି ମନେ ରହୁନି କ'ଣ ପଚାରିଲେ ଯାତୁସାତୁ କହୁଚି ।

(ପୁଣି ନମ୍ବର ଡାଏଲ୍ କରିଛନ୍ତି)

ମାଗୁ : ଦେଈ, ମୁଁ ଯାଇ ବାହାରେ ଦେଖି ଆସିବି କି ? ବାବୁ କାଳେ ବାଟରେ ଆସୁଥିବେ । (ଯିବାକୁ ଉଦ୍ୟତ)

ସୀମା ତୁ ତ ବୋକାଟାଏ । ଛକକୁ ଗଲେ ଘରକୁ ଆସିପାରୁନି କହୁଚି କ'ଣ ବାବୁଙ୍କୁ ଖୋଜି ଆଣିବ ?

ମାଗୁ : ଦେଈ ! ପ୍ରଫୁଲ୍ଲ ବାବୁ- ଆମ ବାବୁଙ୍କ ସାଙ୍ଗ ସେଦିନ କଟକରୁ ଆସିନଥିଲେ, ତାଙ୍କ ପାଖକୁ ଆଉ ଚାଲିଗଲେ କି ?

ସୀମା ପ୍ରଫୁଲ୍ଲବାବୁଙ୍କ ସହ କଥା ହୋଇସାରିଲିଣି । ବାବୁ ତାଙ୍କ ପାଖକୁ ଯାଇନାହାନ୍ତି ।

ମାଗୁ : ବାବୁ ଅଫିସରୁ ତମ ସହ ଫୋନ୍‌ରେ କଥା ହେଇନାହାନ୍ତି–

ସୀମା : ବାପାଙ୍କ କଥା ପଚାରୁଥିଲେ– କିନ୍ତୁ ଅଫିସ୍ ସାରି କୁଆଡ଼େ ଯିବେ କିଛି କହି ନାହାନ୍ତି– ସବୁଆଡ଼ ଫୋନ୍ କରି ସାରିଲିଣି, ରବିଭାଇଙ୍କ ଘର, ଆଉ ହଁ, ତାଙ୍କ ରିସର୍ଚ୍ଚ ଫ୍ରେଣ୍ଡ୍ ଚୌଧୁରୀବାବୁଙ୍କ ଘରକୁ ମଧ୍ୟ ଫୋନ୍ କଲିଣି– କୋଉଠି ସେ ନାହାନ୍ତି ।

ମାଗୁ ଦେଈ ! ତେମେ ଯାହା କୁହ ମୋ ମନ ଜମାରୁ ଭଲ ଲାଗୁନି ସଞ୍ଜ ପହରୁ ଖବରଟା ମିଳିବା ପରଠୁଁ– ମନ ମୋର ମା'ଙ୍କ ଠିଁ । ମୋ' ଛାତି ଖାଲି କୋରି ହେଇଯାଉଛି ଦେଈ ।

ରଥିଆ ମା'ଟାକୁ ମୁଁ ପରା ନିଜ ଆଖିରେ ଦେଖିଛି । ଦିଥର ତ ଆଗରୁ ମୁରୁଛା ହୋଇଥିଲା । ତିନିଥର ବେଳକୁ ସବୁ ଠୁକ୍ !

ବରଷେ ହେଲା ଆଇଲିଣି, ମା'ଙ୍କୁ ଦେଖିନି– ନିଜ ପୁଅ ଝିଅଠୁଁ ବଳି ମତେ କେତେ ଆଦର ସିନିହ କରନ୍ତି– ହେଲେ ଏବେଳରେ ମୁଁ ଏତେ ଦୂରରେ–

ଆଉ ରହିପାରିବନି– ମୁଁ ନିଶ୍ଚେ ଯିବି ।

ସୀମା ମାଗୁ– ହୁଏତ ମୁଁ ଠିକ୍ ସମୟରେ ପହଁଚି ପାରିବିନି । ଇଏ ଯେମିତି ଲୋକ ଯାଙ୍କ ଉପରେ କୋଉ ଭରସା । ବରଂ ତୁ ଚାଲିଯା– ଯା ହେଲେ ବି ପାଣି ଟୋପାଏ ତ ଦବୁ ! (କାନ୍ଦିଛନ୍ତି)

ମାଗୁ ନା ଦେଈ ତମେ ଏମିତି ଅଥୟ ହୁଅନି ।

ବାବୁ ଯଦି ନ ଯିବେ ଆମ ଗାଁ ଲୋକେ କ'ଣ କହିବେ କହିଲ (ଗାଡ଼ି ଶବ୍ଦ) ହେଇ ବାବୁ ଆସିଗଲେଣି ବୋଧେ–

ପ୍ରଶାନ୍ତ : (ପ୍ରବେଶ) କ'ଣ ହେଲା– ମାଗୁ– ତୋ' ଦେଈ କାନ୍ଦୁଛନ୍ତି କାହିଁକି... ସୀମା... ସୀମା.... କ'ଣ ହେଇଚି ତମର... । ସୀମା ଜୋରରେ କାନ୍ଦିଛନ୍ତି)

ମାଗୁ   ଆମ ଗାଁରୁ ସତ୍ୟବାବୁ ଆଇଥିଲେ ।

ପ୍ରଶାନ୍ତ   ଆରେ କୋଉ ସତ୍ୟବାବୁ–

ମାଗୁ : ହଁ ମା'ଙ୍କ ଖବର ନେଇପରା ସେ ଆଇଥିଲେ– ବୁଢ଼ୀ ମା'ଙ୍କର ଦିହ ଭାରି ବ୍ୟସ୍ତ– ମିଟୁବାବୁ, ଟିଟୁବାବୁ ତ ଛୁଆ ଦିଟା– ଡାକ୍ତର ଡାକି– ଗାଁଟା ଯାକର ଲୋକ ମା'କୁ ଆମର ଜଗି ବଇଛନ୍ତି– ସଙ୍ଗେ ସଙ୍ଗେ ଆମକୁ ଯିବାକୁ ହବ– କେତେବେଳେ କୋଉ କଥା–

ବାବୁ ତେମେ ଧୁଆଧୁଇ ହେଇପଡ଼ଟି ଆମେ ବାହାରିବା– ଆମ ଗାଁକୁ...

ପ୍ରଶାନ୍ତ   ହୁଁ... (ଭିତରକୁ ପଶିଛନ୍ତି)

ମାଗୁ   ଦେଈ ! ବାବୁ ବାଥ୍‌ରୁମ୍‌ରୁ ବାହାରିବା ଭିତରେ ତମ ନୁଗାପଟା କ'ଣ ନବ ସଜେଇଦେଲ ମୁଁ ତେଣେ...

ବୁଢ଼ାବାବୁ ବଜାରରୁ ଫେରିଲେଣି କି ନାଇଁ ଦେଖି ଆସେ–

(ପ୍ରସ୍ଥାନ)

ପ୍ରଶାନ୍ତ   (ଭିତରୁ) ମାଗୁ... ମାଗୁ... ଦେଈଙ୍କି କହିଲୁ ନୂଆ ସାଇନ୍‌ସ ଜର୍ଣ୍ଣାଲ୍‌ଟା ସେଇଠି କୋଉଠି ଥିଲା– ବାହାର କରିଦେବେ...

ସୀମା : ଏଇ... ମୁଁ ରେଡ଼ି ହେଇସାରିଲି– ତମେ ଜଳଖିଆ ଟିକକ ଖାଇନିଅଟି ଆମେ ଶୀଘ୍ର ବାହାରି ପଡ଼ିବା–

ପ୍ରଶାନ୍ତ : ଅଫିସ୍ ଯିବା ପୂର୍ବରୁ ଏଇଠି ଥୋଇଥିଲି– କୁଆଡ଼େ ରହିଲା–

ସୀମା : କି ଆଶ୍ଚର୍ଯ୍ୟ–

ପ୍ରଶାନ୍ତ : କିଏ ନେଇଗଲା ନା କ'ଣ ?

ସୀମା : ଆହେ ଫେରିଆସିଲେ ଖୋଜିବ–

ପ୍ରଶାନ୍ତ : ସେଇଟା ନିହାତି ଦରକାର । ଥେସିସ୍ ପେପର୍ ମୁଁ କାଲି ଛାଡ଼ି ପଅରଦିନ ଦାଖଲ କରିବି–

ସୀମା : ଥେସିସ୍ ପେପର୍ ଟା ତମର ଏତେ ବଡ଼ ହେଲା– ତମେ ଶୁଣୁଚ ମା'ର ଏଇଟା ସେକେଣ୍ଡ ଷ୍ଟ୍ରୋକ୍ – ତା'ର ଆଉ କିଏ ଅଛି କହିଲ ? ନ ଗଲେ ଅବସ୍ଥା ଯେ କ'ଣ ହେବ ବୁଝିପାରୁଛ ତ ?

ପ୍ରଶାନ୍ତ ବୁଝିଛି– କିନ୍ତୁ ମୁଁ ନାଚାର

ସୀମା ମାନେ ?

ପ୍ରଶାନ୍ତ ତମେ ମାଗୁକୁ ନେଇ ଚାଲିଯାଅ–

ସୀମା ଆଉ ତମେ ?

ପ୍ରଶାନ୍ତ ମୁଁ ଯାଇ ପାରିବିନି– ପହରଦିନ ଥେସିସ୍ ସବ୍‌ମିଟ୍ ନ କଲେ ମୋର ସବୁ ପରିଶ୍ରମ ବୃଥା ହେଇଯିବ ଗାଇଡ୍ କପି ନେଇ ଫରେନ୍ ଯାଇପାରିବେନି– ଦାଖଲ ପରେ ମୁଁ ସମ୍ଭବ ହେଲେ ତିନିଦିନ ପରେ ପହଂଚିବି–

ସୀମା ସମ୍ଭବ ହେଲେ– ତା' ମାନେ ତମେ ନ ଯାଇ ବି ପାର–

ପ୍ରଶାନ୍ତ କହିଲିତ ସମ୍ଭବ ହେଲେ ନିଶ୍ଚୟ ଯିବି–

ସୀମା : ତମେ ବୁଝିବାକୁ ଚେଷ୍ଟା କର ପ୍ରଶାନ୍ତ– ମୋ ମା'ର ଅବସ୍ଥା ଯାହା–

ପ୍ରଶାନ୍ତ : ତମେ ତ ଯିବ– ମୁଁ ତ ଆଉ ଡାକ୍ତର ନୁହେଁ– ଏ କ୍ଷେତ୍ରରେ ମୋ ଯିବା ନ ଯିବା ଏକା କଥା–

ସୀମା ଦୟାକରି ମତେ ବୁଝିବାକୁ ଚେଷ୍ଟାକର । ତମେ ଡାକ୍ତର ନ ହୋଇପାର କିନ୍ତୁ ତୁମର ଉପସ୍ଥିତ ସେଠି ଜରୁରୀ– ଦରକାର ପଡ଼ିଲେ ମା'କୁ କଟକ ନିଆଯିବ ସବୁ ସିଦ୍ଧାନ୍ତ ତମେ ଯେ ନେବ– ଆଉ କ'ଣ ସେ ପିଲାମାନେ ନା ଗାଁ ବାଲା ନେବେ ?

ପ୍ରଶାନ୍ତ : ମତେ ବାଦ୍ ଦେଇ ତମେ ଠିକ୍ ସିଦ୍ଧାନ୍ତ ନେଇ ପାରିବ ସୀମା–

ସୀମା : ମାନେ ?

ପ୍ରଶାନ୍ତ : ଦିନ ଥିଲା ମୁଁ ବି ଏମିତି ସିଦ୍ଧାନ୍ତ ନେଇଥିଲି କିନ୍ତୁ ତମେ ମାନି ନ ଥିଲ ।

ସୀମା	କ'ଣ ତମେ କହିବାକୁ ଚାହଁ ?

ପ୍ରଶାନ୍ତ	ମା'ଙ୍କ ଦେହ ଅସୁସ୍ଥ– ବେଶ୍ ତମେ ଯାଅ– ତମ ଯିବାକୁ ମୁଁ ମନା କରୁନି– କିନ୍ତୁ ମୁଁ ଯାଇପାରିବି ନାହିଁ–

ସୀମା	ପ୍ରଶାନ୍ତ ! ମୁଁ ଏକୁଟିଆ ଗାଁକୁ ଗଲେ ତମ ସମ୍ମାନ ରହିବ ତ ? ମୋ ମା, ସାଇପଡ଼ିଶା ତମର ଅନୁପସ୍ଥିତିକୁ କିପରି ଗ୍ରହଣ କରିବେ ଭାବି ଦେଖିଲ ଥରେ ?

ପ୍ରଶାନ୍ତ	ଏତେ ଭାବପ୍ରବଣ ହୁଅନି ସୀମା । ବି ରେସନାଲ ଅଲ୍‌ୱେଜ୍ । ଯାହା ସତ୍ୟ ତାହା ସମସ୍ତଙ୍କ ପାଇଁ ସତ୍ୟ । ମୋ ପାଇଁ ତମ ପାଇଁ ବି–

ସୀମା	:	ତେବେ ତମେ କ'ଣ କହିବାକୁ ଚାହଁ ? ମୁଁ ବୁଝିପାରୁନି–

ପ୍ରଶାନ୍ତ	ତମେ କିଛି ବୁଝି ପାରିବନି ସୀମା– ସ୍ୱାର୍ଥପରତାର ପରଳରେ ତମେ ଅନ୍ଧ ହୋଇଯାଇଛ– ମନେ ପଡୁଚି ତମର ? ବାପାଙ୍କର ଦେହ ଖରାପର ଖବର ପାଇ ମୁଁ ଅଫିସ୍‌ରୁ ଧାଇଁ ଆସିଥିଲି ସେଦିନ, ଭାବିଥିଲି ଖବର ଶୁଣୁଶୁଣୁ ତମେ ବ୍ୟସ୍ତ ହୋଇପଡ଼ିବ– ଗାଁକୁ ଯିବାକୁ ଅଡ଼ି ବସିବ (ଦୀର୍ଘଶ୍ୱାସ) ଛାଡ଼–

ସୀମା	:	ପ୍ରଶାନ୍ତ !

ପ୍ରଶାନ୍ତ	ତମ ସାଇପଡ଼ିଶାଙ୍କ ପରି, ଆମ ଗାଁ ବାଲାଙ୍କର ଟିପ୍‌ପଣୀ ଦେବାର ମଧ୍ୟ ଅଧିକାର ରହିଛି– ତମେ ସେଦିନ ସେସବୁ ଚିନ୍ତା କରିଥିଲ କି ?

ସୀମା	:	ଓଃ... ପ୍ରଶାନ୍ତ । ତମେ ଟିକିଏ ଚୁପ୍ କଲ ଭଲା–

ପ୍ରଶାନ୍ତ	:	କାହିଁକି ଚୁପ୍ ହେବି ? ତମେ ସିଧା ମନା କରି ଦେଇଥିଲ– ରବିଭାଇଙ୍କ ଚତୁର୍ଥୀ ରିସେପସନ୍ ଥିଲା ତମ ପାଇଁ ବେଶୀ ଆକର୍ଷଣୀୟ– ଆଜି ମା'ଙ୍କ ଦେହ ଖରାପ ଖବର ଆସିଛି– ମୁଁ ଯିବାକୁ ମନା କରୁଚି କେବଳ ଆମର ଭବିଷ୍ୟତର ଉନ୍ନତି ପାଇଁ । ହଁ, ଏଇ ଦିନ ଦୁଇ ଦିନ ମୋ ପାଇଁ ଅଧିକ ଗୁରୁତ୍ୱପୂର୍ଣ୍ଣ ।

ସୀମା	:	ତମେ ତା'ହେଲେ କହୁଚ ରବିଭାଇଙ୍କ ଭୋଜିକୁ ଯାଇ ମୁଁ ବିରାଟ ଭୁଲ୍ କରିଦେଇଚି–

ପ୍ରଶାନ୍ତ : ସେ ଭୁଲର କ୍ଷମା ଥିଲା ସୀମା– ଗାଁରେ ମୁଁ ମିଛରେ ତୁମ ଦେହ ଭଲ ନାହିଁ କହି ତମର ପୋଜିସନକୁ ତଳକୁ ଖସେଇ ଦେଇନାହିଁ, ହେଲେ, ତମେ ଆଉ ଏକ ଭୁଲ୍ କରି ମୋ ସମ୍ମାନକୁ କ୍ଷୁର୍ଣ୍ଣ କରିବାକୁ ପଛେଇ ନାହଁ । ଆଉ ଏଇତି ପାଇଁ ବାପାଙ୍କ ମନରେ ବି ଦୁଃଖ ଦେଇଥିଲ–

ସୀମା କ'ଣ ସେ ଭୁଲଟା ?

ପ୍ରଶାନ୍ତ ଶଶୁରଙ୍କ ଦେହ ଖରାପ ଶୁଣି ବୋହୂରାଣୀ ସିନା ଯାଇପାରିଲେନି ହେଲେ ବୋହୂର ଦେହ ଖରାପ ଶୁଣି ଶଶୁର ଅଣନିଃଶ୍ୱାସୀ ହେଇ ଧାଇଁ ଆସି ଦେଖନ୍ତିତ ବୋହୂ ବନ୍ଧୁଙ୍କ ସହ କାର୍‌ରେ ନନ୍ଦନକାନନ ଯାଇଛନ୍ତି–

ସୀମା ରବିଭାଇଙ୍କ ଭାଉଜ ନୂଆଲୋକ– କେତେ କରି କହିଲେ– ମାଗୁ କ'ଣ ତମକୁ କହିଲା ବୋଲି ସେଇ କଥାକୁ ଗଣ୍ଠିପକେଇ ରଖିଚ ।

ମୋ ଭୁଲର ଦ୍ୱାହିଦେଇ ତମେ ମତେ ଆକ୍ଷେପକରୁଚ ପ୍ରଶାନ୍ତ ! ମୋ ଉପରେ ଦାଉସାଧୁଛ– ମୁଁ ଯଦି ତମ ଭୁଲର କଥା କହେ ?

ପ୍ରଶାନ୍ତ କିଏ ମନା କଲା– କହୁନ ?

ସୀମା ପିଲା ଛୁଆର ଜଞ୍ଜାଳ ଆସିବା ପୂର୍ବରୁ ଜୀବନର ସମସ୍ତ ଆନନ୍ଦ ଉପଭୋଗକୁ ଆମେ ଚାଖି ଥାଆନ୍ତେ ।

ପ୍ରଶାନ୍ତ : କ'ଣ ହେଲା ? ସବୁ ସମୟ ଯେମିତି ଆମ ପାଇଁ ସରିଯାଇଚି–

ସୀମା ସବୁ କଥାରେ ମତେ ଅବହେଳା କରିବା ତମର ଅଭ୍ୟାସ ହେଇଗଲାଣି– ମନ ବୋଲି ଯେମିତି ମୋର କିଛି ନାହିଁ ।

ସେଥର ଉଟି ପାଇଁ ଏୟାର୍ ଟିକେଟ୍ କରି କ୍ୟାନ୍‌ସେଲ୍ କିଏ କଲା ? ଦାର୍ଜିଲିଂ ପାଇଁ ଟ୍ରେନ୍ ଟିକେଟ୍ ଦି' ଦି' ଥର କିଏ କ୍ୟାନ୍‌ସେଲ୍ କଲା ?

ପ୍ରଶାନ୍ତ : ମୁଁ କଲି, ଯାହା କରିଚି ଠିକ୍ ବି କରିଚି– ଭଲ ଆଉ ମନ୍ଦର ବିଚାର କରିବା ତମେ ଶିଖିନ ସୀମା–

ସୀମା : କ'ଣ କହିଲ ? ମୁଁ – ମୁଁ ଭଲ ଆଉ ମନ୍ଦର ବିଚାର କରିବା ମୋ ଶକ୍ତିର ବାହାରେ ନା ତମର ?

ପ୍ରଶାନ୍ତ ହଁ-ହଁ-ହଁ- ଯଦି ବିଚାର କରିବାର ଶକ୍ତି ତମର ଥାଆନ୍ତା, ତମେ ରବିଭାଇଙ୍କର ରିସେପସନ୍‌କୁ ପଛରେ ପକାଇ ମୋ ସାଙ୍ଗେ ସେଦିନ ଗାଁକୁ ଯାଇଥାଆନ୍ତ-

ସୀମା : ଠିକ୍ ସେମିତି ଟ୍ରିଟ୍‌ମେଣ୍ଟ ପରେ ତମେ ଯଦି ଗାଁରେ ବାପାଙ୍କୁ ଛାଡ଼ି ଆସି ଥାଆନ୍ତ ତେବେ ସୁରକକା ବି ବାପାଙ୍କର ଠିକ୍ ଠାକ୍ ହେପାଜତ୍ ନେଇ ପାରି ଥାଆନ୍ତେ ।

ପ୍ରଶାନ୍ତ : ବନ୍ଦକର । ସୁରକକା- ବାପାଙ୍କର ବୋହୂ କି ପୁଅ ନୁହନ୍ତି- ଏଇଟା ହିଁ ତମର ବୁଝିବାର ଭୁଲ-

ସୀମା ନା- ବାପାଙ୍କ ପ୍ରତି ତମର ଅତି ଅନୁରାଗ ଆସକ୍ତି ହିଁ ତମକୁ ମୋ ପ୍ରତି ଆକ୍ଷେପ କରିବାକୁ ମଉକା ଦେଇଛି- ମୋ ମା'ର ଯେ କେତେ ବଡ଼ ଅଘଟଣ- ତମକୁ ଏଇ ସମୟରେ...

ପ୍ରଶାନ୍ତ : ଯା' ହେଲେ ବି ମୁଁ ଯାଇ ପାରିବିନି- ମୋ' ରିସର୍ଚ୍ଚ କାମ ନ ସରିବା ପର୍ଯ୍ୟନ୍ତ ମୁଁ କେବେ ବି ଯାଇ ପାରିବିନି-

ଇଚ୍ଛା ହେଉଚି ଯଦି ତମେ ଯାଇ ଦେଖି ଆସ ମତେ କିନ୍ତୁ ଯିବାକୁ ବାଧ କରନି-

(ସୀମା କାନ୍ଦୁଛନ୍ତି ଆଲୋକ ଧୀରେ ନଇଁଛି)



# ଶେଷ ଦୃଶ୍ୟ

*(ସମୟ ସକାଳ – ମାଗୁ ଡ୍ରଇଂରୁମ୍ ଭିତରକୁ ପଶି ଆସି ପୂର୍ବ ରାତିରେ ସୀମା ଶୋଇବା ତକିଆକୁ ସୋଫା ଉପରୁ ନେଇଯାଇଛି– ସୀମା ଇତ୍ୟବସରେ ପଶି ଆସି ଚିନ୍ତିତାବସ୍ଥାରେ ବସି ଯାଇ ଭାବୁଛନ୍ତି– ମାଗୁ ଭିତରୁ; ଦେଈ ଦେଈ ଡାକି* ପଶି ଆସିଚି– ହାତରେ ଚିଠି)

ମାଗୁ   ଦେଈ ! ଦେଈ ! ଦେଈ !

ସୀମା : କାହିଁକି ସକାଳୁ ଏମିତି ଚିଲଉଛୁ ମ ?

ମାଗୁ   ବୁଢ଼ାବାବୁଙ୍କୁ ଘର, ବାହାର ବଗିଚା ସବୁଠେଇଁ ଖୋଜି ଆଇଲିଣି । କୋଉଠେଇଁ ପାଉନି....

ସୀମା   ଆଉ କ'ଣ ବାପା କୁଆଡ଼େ ଉଡ଼ିଗଲେ ?

ମାଗୁ   ନାଇଁ ଦେଈ ! ଆସିଲା ଦିନୁ ସକାଳ ହଉ ନ ହଉଣୁ ପାଟି କରିବେ ପରା ! ମାଗୁ, ଚା– ଆଣ, ଚା !

ସୀମା : ଦେହ ତ ତାଙ୍କର ଭଲ ହେଇଗଲାଣି । ବାପ, ପୁଅ ଦୁହେଁ ମିଶି ମର୍ଣ୍ଣିଂୱାକ୍‌ରେ ଯାଇଥିବେ....

ମାଗୁ : ନାଇଁ ଦେଈ । କୁଆଇଁବାବୁ ଏକା ଗଲେ– ଗାଡ଼ି କଥା ବୁଝିବାକୁ

ସୀମା : ଏଁ ।

ମାଗୁ : ବୁଢ଼ାବାବୁଙ୍କ ବେଗେ, ଜାମାପଟା ପରା କିଛି ନାହିଁ ତାଙ୍କ ବିଛଣା ଝାଡୁଥିଲି ଏଇ କାଗଜଟା ଖଟ ଉପରେ ଥୁଆ ହୋଇଥିଲା ।

ସୀମା : କାହିଁ ଦେଖି !

(ସୀମା ଚିଠି ଖୋଲି- ପଢ଼ିଛନ୍ତି, ନୀରବରେ ମାଗୁ ଚାହିଁ ରହିଛି)

ମନ : (ମନମୋହନଙ୍କ କଣ୍ଠସ୍ୱର କେବଳ ଆସିବ)

ମାଆ ସୀମା,

ମୁଁ ଆଜି ଗାଆଁକୁ ଚାଲିଯାଉଚି । ତମମାନଙ୍କୁ ଜଣେଇଥିଲେ, ତମେ ମତେ ଛାଡ଼ି ନଥାନ୍ତ- ସେଇଥିପାଇଁ କାହାକୁ କିଛି ନ ଜଣେଇ ଯିବାକୁ ଉଚିତ୍ ମନେ କଲି । ଗାଆଁ କଥା ମଝିରେ ମଝିରେ ମନେ ପଡୁଚି । ମୋ ଦେହ ପୂରା ଭଲ ହେଇଗଲାଣି- ତମ ସେବା ଯତ୍ନରେ ମୁଁ ବହୁତ ଖୁସି । ଶୁଣିଲି, ସମୁଦୁଣୀଙ୍କ ଦେହ ଖରାପ ଅଛି । ତମେ ଯାଇ ତାଙ୍କୁ ଟିକିଏ ଦେଖି ଆସିବ । ଦରକାର ପଡ଼ିଲେ ତାଙ୍କୁ ଏଇଠିକି ଆଣି, ଭଲ ଡାକ୍ତର ଦେଖେଇବ । ମୁଁ ନିଜେ ଯାଇ ସମୁଦୁଣୀଙ୍କୁ ଦେଖି ଆସିଥାନ୍ତି- କିନ୍ତୁ ଝିଅ ଜୋଇଁ ଗଲେ କଥାଟା ସୁନ୍ଦର ହେବ- ପ୍ରଶାନ୍ତକୁ ତୁ ଖରାପ ଭାବିବୁନି- ସେ ମୋର ପୁଅ- ପୁଅକୁ ମୋର ବିଶ୍ୱାସ ଅଛି, ସେ କେବେ ଜିଦ୍ ଧରିବନି- ସେ ଯିବ- ମୁଁ ଏଠି ରହିଲେ କାଳେ ତୁମର କିଛି ଅସୁବିଧା ହେବ- ସେଇଥିପାଇଁ ଚାଲିଗଲି- ପରେ ନିଶ୍ଚୟ ଆସିବି ।

ସୀମା (କାନ୍ଦିଛନ୍ତି)

ମାଗୁ : କ'ଣ ହେଲା ଦେଈ ?

ସୀମା : ବାପା ଗାଆଁକୁ ଚାଲିଗଲେ ।

ମାଗୁ : ବାବୁ ଚାଲିଗଲେ ?

ପ୍ରଶାନ୍ତ : (ପ୍ରବେଶ) କିଏ ଚାଲିଗଲେ ?

ମାଗୁ : ବୁଢ଼ାବାବୁ ଚାଲିଗଲେ ।

ପ୍ରଶାନ୍ତ : କ'ଣ କହୁଛୁ ମାଗୁ ! (ଛାନିଆ)

ସୀମା : ବାପା କାହାକୁ ନକହି ଗାଁକୁ ଚାଲିଗଲେ ।

ପ୍ରଶାନ୍ତ : ମୂର୍ଖ କୋଉଠିକାର । (ମାଗୁକୁ ଚାହିଁ)

ସୀମା – ଟ୍ୟାକ୍ସି ଆସିଗଲା– ଶୀଘ୍ର ବାହାର– ସଂଧ୍ୟା ବେଳକୁ ଯେମିତି ଫେରିଆସିବା ।

(ମାଗୁ ଗାଁକୁ ଯିବା ଉଦ୍ଦେଶ୍ୟରେ ତରତରରେ ଭିତରକୁ ଯାଇଛି– ସୀମା ସେମିତି କାନ୍ଦୁଥିବେ)

ପ୍ରଶାନ୍ତ ତମକୁ କାଲି ସେମିତି କହିଲି ବୋଲି ତମେ ଭାବିଲ ଯେ ମୁଁ ଯିବିନି ? ସେଦିନ ତମେ ଯେମିତି ମତେ ଏକା ପଠେଇ ଦେଲ ମୁଁ କ'ଣ ତମକୁ ଆଜି ଏକା ପଠେଇ ପାରିବି ? କ୍ୱାଇଁ ଭାବରେ ଶାଶୁଙ୍କ ପ୍ରତି କ'ଣ କର୍ତ୍ତବ୍ୟ, ତା' ମୁଁ ଭଲ ଭାବରେ ଜାଣେ । (ସୀମା ଚିଠି ବଢ଼େଇଛନ୍ତି ଓ ପ୍ରଶାନ୍ତ ପଢ଼ିଛନ୍ତି)

ସୀମା : ମୋ ଭୁଲ୍‌ର କ୍ଷମା ନାହିଁ । ପ୍ରଶାନ୍ତ ।

ମୋରି ପାଇଁ ବାପା ଆଜି ଗାଆଁକୁ ଚାଲିଗଲେ– ବୋହୂ ହିସାବରେ ଯାହା କରିବା କଥା, ମୁଁ କରିନି ।

ମାଆ ଦେହ ଯାହା ହଉନା କାହିଁକି, ମୁଁ କିନ୍ତୁ ଆଗେ ବାପାଙ୍କ ପାଖକୁ ଯିବି– ଚାଲ । ଆଗ ବାପାଙ୍କ ପାଖକୁ ଯିବା–

ପ୍ରଶାନ୍ତ : ବାପାଙ୍କ ଦେହ ଭଲ ହୋଇ ଗଲାଣି– ସିଏତ ଯୋଉ ଦିନ ହେଲେ ଆସିବେ । ଆମେ କିନ୍ତୁ ଆଗେ ମାଆଙ୍କୁ ଦେଖି ଯିବା !

ସୀମା : ପ୍ରଶାନ୍ତ !

ମାଗୁ (ପ୍ରବେଶ କରି) ଦେଈ, ଯିବା ଚାଲ ?

ପ୍ରଶାନ୍ତ : ତୁ କୁଆଡ଼େ ଯିବୁ ? ଆମେ ଦି'ଜଣ ମାକେଟ ଯାଉଚୁ ।

ଏଠି ଘର ଜଗିବ କିଏ ? ଦେ' ସେ ବ୍ୟାଗଟା ।

(ସୀମାକୁ) ତମେ ଶାଢ଼ୀଟା ଚେଞ୍ଜ୍ କଲନି ?

ସୀମା : ନାଇଁ ଚଳିବ ।

ପ୍ରଶାନ୍ତ ତମେ ସେଇ ବନାରସୀ ପାଟଟା ପିନ୍ଧି ଦିଅ- ତମକୁ ବେଶ୍ ମାନିବ...

ସୀମା : ନା- ଥାଉ...

ତମେ ଯେ ଯିବ- ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି । ସତରେ ତମେ... ପ୍ରଶାନ୍ତ । ୟୁ ଆର୍ ଗ୍ରେଟ୍ ।

ପ୍ରଶାନ୍ତ : ନା କିଛି ନୁହେଁ, ଜମା କିଛି ନୁହେଁ ।

(ଉଭୟେ ହସି ହସି ମଞ୍ଚରୁ ଯାଇଛନ୍ତି- ମାଗୁ ଉପରେ ଆଲୋକ ପଡ଼ିଛି)

ମାଗୁ : (ସୀମା ଆଉ ପ୍ରଶାନ୍ତଙ୍କ ଯିବା ବାଟକୁ ଅନେଇ ରହିଛି)

ଭାଙ୍ଗେ ସେହି ଗଢ଼େ ସେହି
ନିଳଗିରି କନ୍ଦରେ,
ଚକା ନୟନ ଚାହାଁ ମାଗେ ମାଗୁଣିରେ-

(ଯବନିକା)





## ସରୋଜ ମିଶ୍ର (୧୯୫୫)

ଜଣେ ସଫଳ ନାଟ୍ୟକାର ଓ କଥାକାର । ମଞ୍ଚ, ବେତାର ଓ ଦୂରଦର୍ଶନର ଜଣେ ଖ୍ୟାତନାମା ନାଟ୍ୟକାର । ବହୁ ସମ୍ମାନ ଓ ପ୍ରଶଂସା ପାଇଥିବା ନାଟ୍ୟକାର ଓଡ଼ିଆ ଭାଷାର ପ୍ରଥିତଯଶା କଥାକାରମାନଙ୍କ କାହାଣୀକୁ ନାଟ୍ୟରୂପ ଦେବାରେ ମଧ ସିଦ୍ଧହସ୍ତ । ଓଡ଼ିଶାର ପ୍ରମୁଖ ସମ୍ବାଦପତ୍ରର ସ୍ତମ୍ଭକାର ଭାବରେ ସେ ସୁପରିଚିତ ।

**ପ୍ରକାଶିତ ପୁସ୍ତକ**

ତିନୋଟି ନାଟକ
ଆହତ ଆଲୋକ (ନାଟକ)
ନିର୍ବାଚିତ ବେତାର (ନାଟକ)
ମୋକ୍ଷ (ନାଟକ)
ଅବ୍ୟକ୍ତ ପ୍ରତୀକ୍ଷା (ନାଟକ)
ପରାଜିତ କାଳିଦାସ (ନାଟକ – ମୂଳ କାହାଣୀ : ଶ୍ରୀ ଅଜିତ କୁମାର ତ୍ରିପାଠୀ)
ପଞ୍ଚନାଟକ
ଅକ୍ଟୋପସ୍ (ନାଟକ – ମୂଳ କାହାଣୀ : ଶ୍ରୀ ଅଜିତ କୁମାର ତ୍ରିପାଠୀ)
ହଜିଯାଉଥିବା ପାଦଚିହ୍ନ – ଗଳ୍ପ ସଂକଳନ
ଛଣ ବନ୍ଧା ମୂର୍ତ୍ତି – ଗଳ୍ପ ସଂକଳନ (ଯନ୍ତ୍ରସ୍ଥ)

**ବୃତ୍ତି** – ଓଡ଼ିଶା ସଚିବାଳୟ ସେବା ।